*ଜାଣିବା ବୁଝିବା ଇଣ୍ଟରନେଟ*

*ରଚନା:*
ଲକ୍ଷ୍ମଣ ମହାନ୍ତି
ନଚିକେତା ଖମାରୀ ଶର୍ମା

*ସମ୍ପାଦନା:*
ଡଃ. ନିଖିଳ ମୋହନ ପଟ୍ଟନାୟକ

*ଅକ୍ଷର ଓ ଅଙ୍ଗ ସଜା:*
ସୃଜନିକା
ଜାଗମରା, ଡାକ: ଖଣ୍ଡଗିରି
ଭୁବନେଶ୍ୱର ୭୫୧ ୦୩୦

*ମଲାଟ ଚିତ୍ର:*
ହିମାଂଶୁ ବୈଶାଖ

*ମୁଦ୍ରଣ:*
ଶୋଭନ,
ଆଚାର୍ଯ୍ୟ ବିହାର,
ଭୁବନେଶ୍ୱର ୭୫୧ ୦୧୩

*ମଲାଟ ମୁଦ୍ରଣ:*
ରେନ୍‌ବୋ ଅଫ୍‌ସେଟ ପ୍ରା. ଲି.
ଭୁବନେଶ୍ୱର

*ପ୍ରକାଶନ:*
ସିଲିକନ ସାହିତ୍ୟ
କମର୍ସିଆଲ କମ୍ପ୍ଲେକ୍ସ,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର ୭୫୧ ୦୧୩

ପ୍ରଥମ ପ୍ରକାଶ: ଫେବୃଆରୀ ୨୦୦୧



ମୂଲ୍ୟ: ଟ୪୦.୦୦

*Understanding Internet*

*Authors:*
Laxman Mohanty
Nachiketa Khamari Sharma

*Editor:*
Dr. Nikhil Mohan Pattnaik

*Typesetting & Page layout:*
Srujanika,
Jagamara, Bhubaneswar 751 030

*Cover Design:*
Himanshu Baishakh

*Printing:*
Shovan,
106 Acharya Bihar,
Bhubaneswar 751 030

*Cover Printing:*
Rainbow Offset (P) Ltd.,
Bhubaneswar

*Publisher:*
Silicon Sahitya,
Commercial Complex,
Acharya Bihar,
Bhubaneswar 751 013.

First Published: February 2001.



**Price: Rs.40.00**

# ମୁଖବନ୍ଧ

ମଣିଷର ଇତିହାସରେ ଅନେକ ପ୍ରକାରର ବିପ୍ଳବ ଘଟିଯାଇଥିବା କଥା ଆମେ ଜାଣିଛେ । ବିଭିନ୍ନ ସମୟରେ ଓ ପରିସ୍ଥିତିରେ ଘଟିଥିବା ଏହି ସାମାଜିକ, ରାଜନୈତିକ ଓ ଜ୍ଞାନବିଜ୍ଞାନ ସମ୍ପର୍କିତ ବିପ୍ଳବଗୁଡ଼ିକ ମଣିଷର ଜୀବନକୁ ଓ ମଣିଷ ସମାଜର ବିକାଶ ଧାରାକୁ ଗଭୀର ଭାବରେ ପ୍ରଭାବିତ କରିଛି ଏବଂ ଆହୁରି ନୂଆ ନୂଆ ବିପ୍ଳବ ପାଇଁ ବାଟ ଖୋଲିଦେଇଛି ।

ଏସବୁ ଭିତରୁ ଜ୍ଞାନବିଜ୍ଞାନ କ୍ଷେତ୍ରରେ ଘଟୁଥିବା ବିପ୍ଳବର ବେଗ ବିଶେଷ ଭାବରେ ବଢ଼ିଯାଇଛି । ବିଜ୍ଞାନ ପାଇଁ ପ୍ରଥମ ବଡ଼ ବିପ୍ଳବ ଆସିଥିଲା ପ୍ରାୟ ତିନିଶହ ବର୍ଷ ତଳେ । ଭୌତିକ ଓ ଯନ୍ତ୍ର ବିଜ୍ଞାନର ନୂଆ ନୂଆ ପ୍ରୟୋଗ ଫଳରେ ଶିଳ୍ପ ବିପ୍ଳବ ଆସିଥିଲା ଏବଂ ସାରା ପୃଥିବୀରେ ମଣିଷର ଜୀବନକୁ ବିଶେଷ ଭାବରେ ବଦଳାଇଥିଲା । ୧୦୦ ବର୍ଷ ତଳେ ଜନ୍ମ ନେଇଥିଲା 'ଆଧୁନିକ ବିଜ୍ଞାନ' । ତାହାର ଚୂଡ଼ାନ୍ତ ପର୍ଯ୍ୟାୟରେ, ପ୍ରାୟ ୫୦ ବର୍ଷ ତଳେ, ମଣିଷ ବସ୍ତୁର ସୂକ୍ଷ୍ମତର ଗଠନକୁ ବୁଝିପାରିଲା ଏବଂ ବସ୍ତୁ ଭିତରେ ଲୁଚି ରହିଥିବା ଶକ୍ତି ଓ କଣିକାଗୁଡ଼ିକୁ କାମରେ ଲଗାଇପାରିଲା । ଏହି ସମୟରେ ଯନ୍ତ୍ର ବିଜ୍ଞାନ ତା'ର ସବୁଠାରୁ ଆଗୁଆ ଅବସ୍ଥାରେ ପହଞ୍ଚିଥିଲା ଏବଂ ଇଲେକ୍ଟ୍ରନିକ ବିଜ୍ଞାନର ବିକାଶ ଆରମ୍ଭ ହେଲା । ଇଲେକ୍ଟ୍ରନିକ ବିଜ୍ଞାନର ଆଗୁଆ ରୂପରୁ ଆସିଲା ସଂଚାର ବିପ୍ଳବ ଏବଂ ବର୍ତ୍ତମାନର ବହୁଚର୍ଚ୍ଚିତ ତଥ୍ୟ ବା ସୂଚନା ବିପ୍ଳବ । ସମସାମୟିକ ଭାବରେ ଜୀବ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ବ୍ୟାପକ ଉନ୍ନତି ଘଟିବାଲିଛି, କିନ୍ତୁ ସାଧାରଣ ମଣିଷର ଜୀବନରେ ତାହାର ପ୍ରଭାବ ପରୋକ୍ଷ ହୋଇରହିଛି ।

ବିଜ୍ଞାନର ଏଭଳି ବୈପ୍ଳବିକ ବିକାଶ ଭିତରୁ ଆଜିର ସୂଚନା ବିପ୍ଳବର ଗୋଟିଏ ବଡ଼ ବିଶେଷତା ରହିଛି । ଏହା ସାଧାରଣ ଜୀବନକୁ ଅନେକ ମାତ୍ରାରେ ଆସିପାରିଛି । ଏହି ବିପ୍ଳବ ତଥ୍ୟ ବା ଜ୍ଞାନର ପରିମାଣକୁ ବଢ଼ାଇଦେଇନାହିଁ । ତାହା କେବଳ ମଣିଷ ସମାଜର ସଞ୍ଚିତ ଜ୍ଞାନକୁ ସେହି ସମାଜ ଭିତରେ ବ୍ୟାପକ ଭାବରେ ଖେଳାଇ ଦେବାପାଇଁ ବାଟ ଖୋଲିଦେଇଛି । ଆଉ ସେହି କାମରେ ଗୋଟିଏ ବିଶେଷ ଭୂମିକା ନେଇଛି ଇଣ୍ଟରନେଟ । ଇଣ୍ଟରନେଟର ବିଭିନ୍ନ ବ୍ୟବସ୍ଥା ସାହାଯ୍ୟରେ ଆଜି ଯେ କେହି ସହଜରେ ଓ ଅଳ୍ପ ଖର୍ଚ୍ଚରେ ସବୁ ପ୍ରକାରର ତଥ୍ୟ ଖୋଜିପାରିବ, ବାଣ୍ଟିପାରିବ ଏବଂ ସଂଗ୍ରହ କରିପାରିବ ।

କିନ୍ତୁ! ହଁ, ସବୁ କଥା ଭଳି ଏଥିରେ ମଧ୍ୟ ଅନେକ କିନ୍ତୁ ରହିଛି । ମିଳିପାରୁଥିବା ତଥ୍ୟର ଉପାଦେୟତାଠାରୁ ଆରମ୍ଭକରି ବିକାଶଶୀଳ ରାଷ୍ଟ୍ରମାନଙ୍କରେ ସାମାଜିକ ବିସମତାକୁ ବଢ଼ାଇବାରେ ସେହି ତଥ୍ୟ ଆଧାରିତ ବଳର ଭୂମିକାକୁ ନେଇ ଅନେକ ଯୁକ୍ତିଯୁକ୍ତ ପ୍ରଶ୍ନ ରହିଛି । ଏହି ସବୁକୁ ବୁଝିବାର ସବୁଠାରୁ ଭଲ ବାଟ ହେଉଛି ତାହାକୁ କାମରେ ଲଗାଇ ପ୍ରତ୍ୟକ୍ଷ ଅନୁଭୂତି ଆଣିବା ଏବଂ ସେହି ଅନୁଭୂତିର ତାର୍କିକ ବିଶ୍ଳେଷଣ କରି ଠିକ ଭୁଲ ବାଛି ଆଗେଇବା ।

ଆଜି ବହୁଳ ଭାବରେ ପ୍ରଚାରିତ ହେଉଥିବା, କିନ୍ତୁ ଅଧିକାଂଶ ଲୋକଙ୍କ ପାଇଁ ଅବୁଝା ରହିଥିବା, ଇଣ୍ଟରନେଟ ଉପରେ ପ୍ରାରମ୍ଭିକ ଅନୁଭୂତି ଆଣିବାରେ ସହାୟକ ହେବା ଲକ୍ଷ୍ୟରେ ଏହି ବହିଟିର ପରିକଳ୍ପନା । ଆଶାକରୁଛୁ ଆମର ସେହି ଲକ୍ଷ ଅନ୍ତତଃ କିଛି ମାତ୍ରାରେ ପୂରା ହୋଇପାରିବ ।

# ସୂଚୀପତ୍ର

# ପ୍ରଥମ ଅଧ୍ୟାୟ

# ଉପକ୍ରମ

ତୁମେ ନିଶ୍ଚୟ **ଇଣ୍ଟରନେଟ** ନାମଟି ଶୁଣିଥିବ ଏବଂ ଏକ ଧାରଣା ପାଇଥିବ ଯେ ତାହା ବିଷୟରେ ନଜାଣିଲେ ବର୍ତ୍ତମାନର ଯୁଗରେ ତୁମେ ଜ୍ଞାନ, ବୃଦ୍ଧି ଓ ବିକାଶର ଦୌଡ଼ରେ ପଛରେ ପଡ଼ିଯିବ। ତେବେ କିଛି ନଜାଣିଥିଲେ ବି ହତାଶ ହେବାର କାରଣ ନାହିଁ। ଆସ, ଇଣ୍ଟରନେଟ କ'ଣ ଏବଂ ତାହା ଆମ ଜୀବନକୁ କିପରି ପ୍ରଭାବିତ କରିବାକୁ ଯାଉଛି ସେ ବିଷୟରେ ଜାଣିବାର ଯାତ୍ରା ଆମେ ଆରମ୍ଭ କରିବା। କିନ୍ତୁ ତାହା ଆଗରୁ ଆମେ ଇଣ୍ଟରନେଟର ମୂଳରେ ଥିବା **ନେଟୱର୍କ** ବା ସଂଯୋଗତନ୍ତ୍ର ବିଷୟରେ ପ୍ରଥମେ ବୁଝିବା।

*ନେଟୱର୍କ କଣ?*

ତୁମେ ନିଶ୍ଚୟ କମ୍ପ୍ୟୁଟର ଦେଖିଥିବ ଓ ସେଥିରେ କାମ କରିଥିବ। ସେଥିରେ ତୁମର ପ୍ରୋଗ୍ରାମ (କାରିକା) ସବୁକୁ ହାର୍ଡ ଡିସ୍କରେ ବା ଭବିଷ୍ୟତ ବ୍ୟବହାର ପାଇଁ ଫ୍ଲପି ଡିସ୍କରେ ମଧ୍ୟ ରଖିଥିବ। ମନେକର ତୁମ ସାଙ୍ଗ ସୀତାର ମଧ୍ୟ ଗୋଟିଏ କମ୍ପ୍ୟୁଟର ଅଛି ଓ ସେଥିରେ ସେ ତା'ର କାରିକା ଓ ତଥ୍ୟ ରଖିଛି। ଯଦି ତୁମେ ସେହି କାରିକା ଓ ତଥ୍ୟ ପାଇବାକୁ ଚାହଁ ତାହା କିପରି କରିହେବ? ତୁମେ ଯାଇ ସୀତାର କମ୍ପ୍ୟୁଟର ଚଲାଇ ସେହି କାରିକା ଆଦିକୁ ଗୋଟିଏ କିମ୍ବା ଅଧିକ ଫ୍ଲପି ଡିସ୍କରେ ନକଲ କରି ଆଣିପାରିବ ଏବଂ ସେଥିରୁ ପୁଣି ତୁମ କମ୍ପ୍ୟୁଟରର ହାର୍ଡ ଡିସ୍କକୁ ନକଲ କରିବ। ଏତେ କାମ ପରେ ତୁମେ ତୁମର କମ୍ପ୍ୟୁଟରରେ ସେହି କାରିକା ଓ ତଥ୍ୟ ସହିତ କାମ କରିପାରିବ।

ଆମ ପାଖରେ ଏହି ବାଟର ଅନ୍ୟ କିଛି ବିକଳ୍ପ ଅଛି କି? ହଁ, ଅଛି! ଆମେ ସେହି ଦୁଇ (ତୁମର ଓ ସୀତାର) କମ୍ପ୍ୟୁଟରକୁ କେବୁଲ ଜରିଆରେ ଯୋଡ଼ିଦେଇପାରିବା ଏବଂ କିଛି ସ୍ୱତନ୍ତ୍ର କାରିକା ବଳରେ ତୁମର କମ୍ପ୍ୟୁଟରରେ ବସି ସୀତାର ତଥ୍ୟ ଆଦିରେ କାମ କରିପାରିବା। ଦୁଇଟି କମ୍ପ୍ୟୁଟର ଭିତରେ କେବୁଲ ସଂଯୋଗ ସ୍ଥାପନ କରି ଆମେ ଗୋଟିଏ ନେଟୱର୍କ କରିପାରିଛେ। ଭାବ ତ, ଆମେ ଯଦି ଅନେକଗୁଡ଼ିଏ କମ୍ପ୍ୟୁଟରକୁ ଏହିଭଳି ଯୋଡ଼ି ଦେଇପାରିବା ତେବେ କ'ଣ ହେବ! ଆମେ ଯେ କୌଣସି କମ୍ପ୍ୟୁଟରର କାରିକା ଓ ତଥ୍ୟ ଅନ୍ୟ କେଉଁ କମ୍ପ୍ୟୁଟରରେ ବସି ବ୍ୟବହାର କରିପାରିବା।

ଏହା ଫଳରେ ଆଉ କିଛି ଅଧିକ ଆମେ କରିପାରିବା କି? ହଁ, ଏହି ବାଟରେ ଆମେ ଅନ୍ୟ କେଉଁ କମ୍ପ୍ୟୁଟରର ପାର୍ଶ୍ୱଉପକରଣ *(ପେରିଫେରାଲ)* ସବୁର ସୁବିଧା ନେଇପାରିବା। ଅର୍ଥାତ, ଯଦି ତୁମ କମ୍ପ୍ୟୁଟରରେ ଲେଜର ମୁଦ୍ରଣୀ ନାହିଁ, କିନ୍ତୁ ତୁମ ସାଙ୍ଗ ହରିର ସେହି ଯନ୍ତ୍ର ଅଛି, ତାହାହେଲେ ତୁମେ ଉପଯୁକ୍ତ ନିର୍ଦ୍ଦେଶ ଦେଇ ହରିର ମୁଦ୍ରଣୀରେ ତୁମର ଦଲିଲ ମୁଦ୍ରିତ କରିପାରିବ। ଏହି ବାଟରେ ଆମେ ମୁଦ୍ରଣୀ ଓ ପ୍ଲଟର ଭଳି ସାଧନକୁ ମଧ୍ୟ ଭାଗ କରିବାକୁ ସକ୍ଷମ ହୋଇପାରିବା।

ଏହି ବାଟରେ ଆମେ ଆଉ ଗୋଟିଏ ଚମତ୍କାର କାମ ମଧ୍ୟ କରିପାରିବା। ଯାହାକୁ 'ଖବର ଦେବା' କୁହାଯାଏ। ତୁମେ ଯଦି ରାଧାକୁ କିଛି ଖବର ଦେବାକୁ ଚାହୁଁଛ, ତୁମକୁ ପାଟିକରି କହିବାକୁ ହେବନାହିଁ, ଟେଲିଫୋନ ବ୍ୟବହାର କରିବାକୁ ହେବନାହିଁ କିମ୍ବା ରାଧା ପାଖକୁ ଯାଇକରି କଥାହେବାକୁ ପଡ଼ିବନାହିଁ। ବରଂ ତୁମକୁ କମ୍ପ୍ୟୁଟରରେ ଗୋଟିଏ ଛୋଟ ଚିଠା (ଖବର) ପ୍ରସ୍ତୁତ କରିବାକୁ ପଡିବ ଏବଂ ତାକୁ ରାଧାର କମ୍ପ୍ୟୁଟରକୁ ପଠାଇବାକୁ ହେବ। ତାହେଲେ ସେ ଖବରଟିକୁ ପଢ଼ିପାରିବ। ଏହି ଖବର ଦେବାନେବା ବ୍ୟବସ୍ଥା ସାଧାରଣ ଭାବରେ **ଇଲେକ୍ଟ୍ରୋନିକ ଡାକ (ଇ-ଡାକ)** ବ୍ୟବସ୍ଥା ଭାବରେ ଜଣା। ଆମକୁ ମନେ ରଖିବାକୁ ହେବ ଯେ ଇ-ଡାକ ହିଁ ନେଟୱର୍କ ସଂଯୋଗର ସବୁଠାରୁ ବଡ଼ ଲାଭ ହୋଇପାରିଛି।

ସାଧାରଣତଃ କମ୍ପ୍ୟୁଟର ନେଟୱର୍କରେ ଗୋଟିଏ ବଡ଼ ଶକ୍ତିଶାଳୀ କମ୍ପ୍ୟୁଟର ରହିଥାଏ। ଏହାକୁ ସେବକ ବା *ସର୍ଭର* କୁହାଯାଏ। ତାହା ସହିତ ଅନ୍ୟ କମ୍ପ୍ୟୁଟର ସବୁ (ଯେଉଁଗୁଡ଼ିକ ଏତେ ଶକ୍ତିଶାଳୀ ହେବା ଜରୁରୀ ନୁହେଁ) ସଂଯୁକ୍ତ ହୋଇଥାନ୍ତି। ଏହି ବ୍ୟବସ୍ଥାରେ ସେହି ସାନ କମ୍ପ୍ୟୁଟରଗୁଡ଼ିକ ମଧ୍ୟ ନିଜ ନିଜ ସହିତ ଯୋଡ଼ା ହୋଇଯାଆନ୍ତି। ଏହି ସାନ କମ୍ପ୍ୟୁଟରଗୁଡ଼ିକ **କର୍ମସ୍ଥଳ** ବା *ୱର୍କଷ୍ଟେସନ* ନାମରେ ଜଣା। ଏଗୁଡ଼ିକୁ **ଆସନ୍ଧି** ବା *ନୋଡ୍* ମଧ୍ୟ କୁହାଯାଏ। ୱର୍କଷ୍ଟେସନଗୁଡ଼ିକରେ ଦରକାର ହେଉଥିବା ସବୁ ତଥ୍ୟ ଓ କାରିକା ସାଧାରଣତଃ ସେବକରେ ରହିଥାଏ। ୱର୍କଷ୍ଟେସନର ଯାହା ଦରକାର ହୁଏ ତାହା ସେ ସେବକକୁ ମାଗେ ଓ ସେବକ ତାକୁ ତାହା ଯୋଗାଇଦିଏ।

### *ନେଟୱର୍କରେ କମ୍ପ୍ୟୁଟର ଯୋଡ଼ିବାର ଧାରା*

କମ୍ପ୍ୟୁଟରଗୁଡ଼ିକ କେବୁଲ ଦ୍ୱାରା ଯୋଡ଼ି ହୋଇଥାନ୍ତି ବୋଲି ଆମେ ଆଗରୁ କହିଛେ। ପ୍ରକୃତରେ କିନ୍ତୁ ଏଥିପାଇଁ ଆହୁରି ଅନେକ ମାଧ୍ୟମ ଦରକାର ହୁଏ। ଦୁଇଟି କମ୍ପ୍ୟୁଟରକୁ ଟେଲିଫୋନ ଲାଇନ ଜରିଆରେ ଯୋଡ଼ିହେବ। କିନ୍ତୁ ସାଧାରଣତଃ କମ୍ପ୍ୟୁଟର ମୋଡେମ ନାମକ ଏକ ବିଶେଷ ଉପକରଣ ଜରିଆରେ ଯୋଡ଼ାଯାଇଥାଏ ଏବଂ ଏହି ମୋଡେମ ଟେଲିଫୋନ ସହିତ ସଂଯୁକ୍ତ ହୁଏ। ଅନ୍ୟ ମୁଣ୍ଡରେ ଥିବା ତୁମ ସାଙ୍ଗର କମ୍ପ୍ୟୁଟର ମଧ୍ୟ ଆଉ ଏକ ମୋଡେମ ଜରିଆରେ ଟେଲିଫୋନ ଲାଇନ ସହିତ ଯୋଡ଼ି ହୋଇଥାଏ। ମଝିରେ ମୋଡେମର କାମ ପୁଣି କ'ଣ ତାହା ହୁଏତ ତୁମେ ଭାବୁଥିବ। ସେହି କାରଣ ଏବେ ବୁଝିବା।

ମୋଡେମ ଶବ୍ଦଟି ପ୍ରକୃତରେ ହେଉଛି *'ମଡ୍ୟୁଲେସନ ଓ ଡିମଡ୍ୟୁଲେସନ'*ର ସଂକ୍ଷେପ। ତୁମେ ଜାଣିଥିବ ଯେ କମ୍ପ୍ୟୁଟର ହେଉଛି ଗୋଟିଏ ଡିଜିଟାଲ୍ ବା ସାଂଖ୍ୟିକ ଉପକରଣ। ଅର୍ଥାତ ଏହା ସଂକେତକୁ ସଂଖ୍ୟା (ସାଧାରଣତଃ ୦ ଓ ୧) ରୂପରେ ବ୍ୟବହାର କରିଥାଏ। କିନ୍ତୁ ଟେଲିଫୋନ ହେଉଛି ଗୋଟିଏ ଆନାଲଗ ବା ଅନୁରୂପ ଉପକରଣ ଯେଉଁଥିରେ ସଙ୍କେତ ତରଙ୍ଗ ରୂପରେ ପଠାଯାଏ। କମ୍ପ୍ୟୁଟର ଭଳି ଏକ ଡିଜିଟାଲ ଉପକରଣକୁ ଟେଲିଫୋନ ଭଳି ଏକ ଏନାଲଗ ଉପକରଣ ସହିତ ଯୋଡ଼ିବା ପାଇଁ ମୋଡେମ ଦରକାର ହୋଇଥାଏ। ଏହି ମୋଡେମ ଡିଜିଟାଲ ସଙ୍କେତକୁ ଏନାଲଗ ସଙ୍କେତରେ *(ମଡ୍ୟୁଲେସନ)* ଏବଂ ଏନାଲଗ ସଙ୍କେତକୁ ଡିଜିଟାଲ ସଙ୍କେତରେ *(ଡିମଡ୍ୟୁଲେସନ)* ବଦଳାଇ ଥାଏ। ତୁମେ ଯେବେ ତୁମର ସାଙ୍ଗ ପାଖକୁ କିଛି ଖବର ପଠାଅ, ତୁମ କମ୍ପ୍ୟୁଟରର ଡିଜିଟାଲ ସଙ୍କେତକୁ ମୋଡେମ ଏନାଲଗ ସଙ୍କେତରେ ପରିଣତ କରେ। ସେହି ସଙ୍କେତ ଟେଲିଫୋନ ତାର ଦେଇ ତୁମ ସାଙ୍ଗର ମୋଡେମରେ ପହଞ୍ଚେ। ସେଠାରେ ମୋଡେମ ସାହାଯ୍ୟରେ ଏନାଲଗ ସଙ୍କେତ ପୁଣି ଡିଜିଟାଲ ରୂପକୁ ଆସିବାପରେ ତୁମ ସାଙ୍ଗର କମ୍ପ୍ୟୁଟର ତାହାକୁ ବୁଝେ ଏବଂ ସେହି ଅନୁସାରେ କାମକରେ। ତୁମ ସାଙ୍ଗ କିଛି ସନ୍ଦେଶ ପଠାଇଲେ ତାହା ମଧ୍ୟ ଏହିଭଳି ଯାଇଥାଏ।

ସାଧାରଣ ଟେଲିଫୋନ ଲାଇନ ଛଡ଼ା ନେଟୱର୍କର କମ୍ପ୍ୟୁଟର ସ୍ୱତନ୍ତ୍ର ଟେଲିଫୋନ ଲାଇନ, ଉପଗ୍ରହ ସଂଯୋଗ, ମାଇକ୍ରୋୱେଭ ଚ୍ୟାନେଲ ଏବଂ ରେଡ଼ିଓ ତରଙ୍ଗ ଆଦି ଜରିଆରେ ମଧ୍ୟ ଯୋଡ଼ାଯାଇପାରେ।

### *କମ୍ପ୍ୟୁଟର କିପରି କଥା ହୁଅନ୍ତି?*

ଏବେ ତୁମେ ବୁଝିବଣି ଯେ ଗୋଟିଏ ନେଟୱର୍କରେ ଅନେକଗୁଡ଼ିଏ କମ୍ପ୍ୟୁଟର ଯୋଡ଼ି ହୋଇଥାଏ। ତଥାପି ସେଗୁଡ଼ିକ ନିଜନିଜ ଭିତରେ କିପରି କଥା ହୁଅନ୍ତି ସେ ବିଷୟରେ ତୁମେ ହୁଏତ ନିଶ୍ଚିତ ନଥିବ। ତୁମ ଶ୍ରେଣୀର କଥା ମନେପକାଅ। ଶିକ୍ଷକ ଯେତେବେଳେ ପଢ଼ାନ୍ତି ତୁମେ ସମସ୍ତେ ତାଙ୍କ କଥା ଶୁଣୁଥାଅ। ଶିକ୍ଷକ ଯଦି କେଉଁ ନିର୍ଦ୍ଦିଷ୍ଟ ପିଲାକୁ କିଛି ପଚାରନ୍ତି ତେବେ ସେ ଉଠି ତା'ର କଥା କହିଥାଏ। ଭାବ ତ, ଯଦି ଏପରି କିଛି ନିୟମ ନଥାନ୍ତା ଏବଂ ସମସ୍ତେ ଅନ୍ୟମାନଙ୍କ ସହିତ ଏକ ସମୟରେ କଥା ହୁଅନ୍ତେ, ତାହେଲେ କେତେ ଗୋଳମାଳ ହୁଅନ୍ତା? ତେଣୁ ପ୍ରତ୍ୟେକେ ଯେପରି କହିପାରିବେ ଓ ପ୍ରତ୍ୟେକଙ୍କ କଥା ଶୁଣିପାରିବେ ସେଥିପାଇଁ ଏକ ଉପଯୁକ୍ତ ବ୍ୟବସ୍ଥା ରହିବା ଦରକାର। ଠିକ୍ ସେଭଳି କିଛି ବ୍ୟବସ୍ଥା ସବୁ ନେଟୱର୍କରେ ରଖିବାକୁ ହୋଇଥାଏ ଯାହା ବଳରେ କୌଣସି ଦୁଇଟି କମ୍ପ୍ୟୁଟର ଠିକ୍ ଭାବରେ କଥା ହୋଇପାରିବେ। କମ୍ପ୍ୟୁଟର ଭାଷାରେ ଏହି ବ୍ୟବସ୍ଥାକୁ *ପ୍ରୋଟୋକଲ୍* ବା ରୀତି କୁହାଯାଏ। ଆମ ଦେଶକୁ କୌଣସି ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କର ଗସ୍ତ ସମୟରେ ତୁମେ ନିଶ୍ଚୟ ଏହି ପ୍ରୋଟୋକଲ୍ ଶବ୍ଦଟି ଶୁଣିଥିବ। ସେତେବେଳେ କ'ଣ କରାଯିବ ଓ କରାନଯିବ, କିଏ କ'ଣ କରିବ, ସେ କେଉଁଠି ରହିବେ ଆଦିର ତାଲିକା ପ୍ରୋଟୋକଲ୍ ଭିତରେ ରହିଥାଏ।

ନେଟୱର୍କ କ୍ଷେତ୍ରରେ ପ୍ରୋଟୋକଲ୍ ବଜାୟ ରଖିବା ପାଇଁ କିଛି ବିଶେଷ ସଙ୍କେତ ପଠାଯାଏ। କିଏ ଏବଂ କାହାକୁ ଖବର ପଠାଇବ ତାହା ଏହି ସଙ୍କେତରୁ ଜଣାପଡ଼େ। ଏହି ସଙ୍କେତ ସବୁ କମ୍ପ୍ୟୁଟରରେ ପହଞ୍ଚେ, କିନ୍ତୁ କେବଳ କିଛି ନିର୍ଦ୍ଦିଷ୍ଟ କମ୍ପ୍ୟୁଟର ଏଥିପ୍ରତି ସକ୍ରିୟ ରୁହନ୍ତି।

### *ବିଭିନ୍ନ ପ୍ରକାରର ନେଟୱର୍କ*

ସର୍ଭର ଓ ୱର୍କଷ୍ଟେସନର ଅବସ୍ଥିତିକୁ ନେଇ କମ୍ପ୍ୟୁଟର ନେଟୱର୍କ LAN, MAN, WAN ଭଳି ନାଁରେ ଚିହ୍ନଟ ହୁଏ। ନେଟୱର୍କ ସବୁ କମ୍ପ୍ୟୁଟର ଯଦି ଗୋଟିଏ ଘରେ ବା ହତାରେ ରହିଥିବ ତାହାହେଲେ ତାକୁ LAN ବା *ଲୋକାଲ ଏରିଆ ନେଟୱର୍କ* (ସ୍ଥାନୀୟ ନେଟୱର୍କ) କୁହାଯାଇଥାଏ। ଯଦି ନେଟୱର୍କର କମ୍ପ୍ୟୁଟରଗୁଡ଼ିକ ସାରା ସହରରେ ବିଛେଇ ହୋଇଥିବେ ତେବେ ତାହାକୁ MAN ବା ମେଟ୍ରୋପଲିଟାନ ଏରିଆ ନେଟୱର୍କ (ମହାନଗରୀୟ ନେଟୱର୍କ) କୁହାଯାଏ। ମନେକର ପୃଥିବୀର ବିଭିନ୍ନ ଦେଶରେ ଥିବା କେତେ କମ୍ପ୍ୟୁଟର ଭିତରେ ସଂଯୋଗ ରହିଛି। ତାହାହେଲେ ଏହା ହେବ ଗୋଟିଏ WAN ବା *ୱାଇଡ ଏରିଆ ନେଟୱର୍କ* (ମହାଆଞ୍ଚଳୀୟ ନେଟୱର୍କ)। ଏବେ ବୁଝି ହେଉଥିବ ଯେ ଭୌଗଳିକ ଅବସ୍ଥିତିକୁ ନେଇ ଗୋଟିଏ ନେଟୱର୍କକୁ LAN, MAN, WAN କୁହାଯାଏ।

### *ଇଣ୍ଟରନେଟ କ'ଣ?*

କମ୍ପ୍ୟୁଟର ନେଟୱର୍କ ବିଷୟରେ ଆମର କିଛି ସାଧାରଣ ଧାରଣା ଆସିଗଲାଣି। ତେଣୁ ଇଣ୍ଟରନେଟ ଜିନିଷଟି କ'ଣ ତାହା ଜାଣିବାର ଚେଷ୍ଟା ଏବେ କରିବା। ସରଳ ଶବ୍ଦରେ ଇଣ୍ଟରନେଟକୁ ଆମେ ଅନେକ ନେଟୱର୍କର ଏକ ନେଟୱର୍କ କହିପାରିବା। କେବେ କେବେ ଏହାକୁ *'ସବୁ ନେଟୱର୍କର ମା'* ବା ମହାନେଟୱର୍କ ବୋଲି କୁହାଯାଇଥାଏ। ପୃଥିବୀସାରା ହଜାର ହଜାର LAN, MAN, WAN ରହିଛି। ଏହି ସବୁକୁ ଯଦି ଆମେ ଯୋଡ଼ିଦେଇ ପାରିବା ତେବେ କେତେ ବିରାଟ ନେଟୱର୍କଟିଏ ଆମକୁ ମିଳିନଯିବ। ଇଣ୍ଟରନେଟ ହିଁ ହେଉଛି ଏହି ବିରାଟ ନେଟୱର୍କ। ଏହି ବର୍ଣ୍ଣନାରୁ ଇଣ୍ଟରନେଟ କ'ଣ ତାହା ତୁମେ ସହଜରେ ବୁଝିପାରୁଥିବ ଏବଂ ଏହା କିପରି କାମରେ ଲାଗିପାରିବ ତାହା ଅନୁମାନ କରିପାରୁଥିବ।

ନେଟୱର୍କ କିପରି ତଥ୍ୟ, କାରିକା, ମୁଦ୍ରଣୀ ଓ ପ୍ଲଟର ଭଳି ସାଧନ ସାମଗ୍ରୀ ବାଣ୍ଟିବାରେ ସାହାଯ୍ୟ

କରିଥାଏ ତାହା ଆମେ ଆଗରୁ ଆଲୋଚନା କରିଛେ। ନେଟୱର୍କ ବ୍ୟବହାର କରୁଥିବା ଲୋକଙ୍କ ଭିତରେ ଇଲେକ୍ଟ୍ରନିକ ଯୋଗାଯୋଗ ବା ଇ-ଡାକର ସୁବିଧା ମିଳିଥାଏ। ଏହି କଥାକୁ ବଢ଼ାଇଦେଲେ ଆମେ ଅନୁମାନ କରିପାରିବା ଇଣ୍ଟରନେଟ ରୂପକ ଏତେ ବିରାଟ ନେଟୱର୍କ ଆମକୁ କିଭଳି ଲାଭ ଦେଇପାରିବ। ହଠାତ ସାରା ପୃଥିବୀ ସଂକୁଚିତ ହୋଇ ଏକ ବିଶ୍ୱ ଗ୍ରାମର ରୂପ ନେଲା ଭଳି ମନେହେବ। ପୃଥିବୀର ଯେ କୌଣସି ସ୍ଥାନରୁ ଅନ୍ୟ କେଉଁ ଅଞ୍ଚଳରେ ରହୁଥିବା ଲୋକଙ୍କ ସହିତ ସହଜରେ ଓ ଅଳ୍ପ ସମୟରେ ଯୋଗାଯୋଗ କରିହେବ। ଅବଶ୍ୟ ଉଭୟ ପଟର ଲୋକ ନେଟରେ ଯୋଡ଼ାଥିବା ଦରକାର (ଇଣ୍ଟରନେଟକୁ ଖାଲି *ନେଟ* ମଧ୍ୟ କୁହାଯାଏ)। ଆମେ ଯେତେବେଳେ ଶୀଘ୍ର କହୁଛେ ତାହା ପ୍ରକୃତରେ କେତେ ଶୀଘ୍ର ତୁମେ ଠଉରେଇ ପାରୁଛ କି? ଏହା ମାତ୍ର କିଛି ସେକେଣ୍ଡର କଥା। ତୁମର ଇ-ଡାକ ଅଷ୍ଟ୍ରେଲିଆରେ ରହୁଥିବା ତୁମର ସାଙ୍ଗ ଜେସିକା ପାଖରେ ମାତ୍ର କେତେ ସେକେଣ୍ଡରେ ପହଞ୍ଚିପାରିବ। ତୁମେ ମଧ୍ୟ ତାହାର ଉତ୍ତର ଆଉ କିଛି ସେକେଣ୍ଡରେ ପାଇପାରିବ ଯଦି ସେତେବେଳେ ସେ ଇଣ୍ଟରନେଟ ସହିତ ସଂଯୁକ୍ତ ଥିବ ଓ ତାହାର ଉତ୍ତରକୁ ବେଶ୍ ଶୀଘ୍ର ଟାଇପ କରିପାରିବ।



**ଇଣ୍ଟରନେଟ କେତେ ବଡ଼ ତା'ର ଏକ ଧାରଣା ମିଳିପାରିବ ବ୍ୟବହାରକାରୀଙ୍କ ସଂଖ୍ୟାରୁ –**

- **ଏଥିରେ ଯୋଡ଼ାହୋଇଛି ଦଶ ଲକ୍ଷରୁ ଅଧିକ କମ୍ପ୍ୟୁଟର ଓ କେତେ ହଜାର ନେଟୱର୍କ।**
- **ପ୍ରତିଦିନ ପ୍ରାୟ ୧୮କୋଟି ଲୋକ ଇଣ୍ଟରନେଟ ବ୍ୟବହାର କରୁଛନ୍ତି, ଏବଂ**
- **୨୭କୋଟି ଇ-ଡାକ ଇଣ୍ଟରନେଟ ଜରିଆରେ ପଠାଯାଉଛି।**

**ପ୍ରମୁଖ ସଂଯୋଗ (ବ୍ୟାକ୍‌ବୋନ୍) କ'ଣ?**

ଦୁଇଟି ବଡ଼ ସହରକୁ ଯୋଡୁଥିବା ଅତି ବେଗବାନ ଦୂରସଞ୍ଚାର ବ୍ୟବସ୍ଥାକୁ ପ୍ରମୁଖ ସଂଯୋଗ କୁହାଯାଏ। ଏହିଭଳି ଅନେକ ପ୍ରମୁଖ ସଂଯୋଗକୁ ମିଶାଇକରି ଇଣ୍ଟରନେଟର ତଥ୍ୟ ସରବରାହ ବ୍ୟବସ୍ଥା ଗଢ଼ାହୋଇଥାଏ।

## ଦ୍ୱିତୀୟ ଅଧ୍ୟାୟ

# ଇଣ୍ଟରନେଟର ନୂଆ ଦୁନିଆ

ପ୍ରଥମ ଅଧ୍ୟାୟରେ ଇଣ୍ଟରନେଟ ବିଷୟରେ ଆମେ କିଛି ମୌଳିକ ଧାରଣା ପାଇଛେ। ଏବେ ଦେଖିବା ଇଣ୍ଟରନେଟରୁ ଆମେ ପ୍ରକୃତରେ କି ପ୍ରକାରର ଲାଭ ପାଇପାରୁଛେ ଏବଂ କାହିଁକି କୁହାଯାଉଛି ଯେ କେତେଶହ ବର୍ଷ ତଳର ଶିଳ୍ପ ବିପ୍ଳବ ଭଳି ଏହା ଏକ ନୂଆ ବିପ୍ଳବର ବାଟ ଖୋଲିଦେଉଛି।

*ଇଣ୍ଟରନେଟ କ'ଣ ଦିଏ?*

ଆମେ ଇଲେକ୍‌ଟ୍ରନିକ ଡାକ ବିଷୟରେ କଥା ହୋଇସାରିଛେ। ସମ୍ଭବତଃ ଏହା ହିଁ ଇଣ୍ଟରନେଟର ସବୁଠାରୁ ବଡ ଲାଭ। ପରସ୍ପର ସହିତ ସମ୍ପର୍କ ରଖିବାରେ, ଦରକାର ସମୟରେ ସାହାଯ୍ୟ ମାଗିବାରେ ଓ ବିଭିନ୍ନ କାମପାଇଁ ସୂଚନା ବାଣ୍ଟିବାରେ ଏହା ଲୋକଙ୍କୁ ସାହାଯ୍ୟ କରୁଛି। ଇ-ଡାକର ଲାଭ ବୁଝିବାପାଇଁ ଗୋଟିଏ ଉଦାହରଣ ନେବା। ଧର ତୁମର ସ୍କୁଲ ଏକ ପ୍ରଦର୍ଶନୀର ଆୟୋଜନ କରୁଛି ଏବଂ ସେଥିରେ ଭାଗନେବା ପାଇଁ ଅନ୍ୟ କେତେ ସ୍କୁଲକୁ ତୁମେ ନିମନ୍ତ୍ରଣ କରିବାକୁ ଚାହୁଁଛ। ସେହି ସ୍କୁଲଗୁଡ଼ିକୁ କାଗଜର ଚିଠି ପଠାଇବା ବଦଳରେ ତୁମେ ଇ-ଡାକ ପଠାଇପାରିବ। ଇ-ଡାକର ବେଗ ଅଧିକ ଓ ତାହା ବେଶ୍ ଶସ୍ତା। ଏବେ ଗୋଟିଏ ଲଫାଫା ପଠାଇବା ପାଇଁ ତିନିଟଙ୍କାର ଡାକ ଟିକଟ ଲଗାଇବାକୁ ପଡୁଛି ଏବଂ ଏହାକୁ ଭୁବନେଶ୍ୱରରୁ ଦିଲ୍ଲୀରେ ପହଞ୍ଚିବାପାଇଁ ପ୍ରାୟ ଚାରିଦିନ ଲାଗୁଛି। କିନ୍ତୁ ଗୋଟିଏ ଇ-ଡାକ ବିନା ଖର୍ଚ୍ଚରେ ବା ଗୋଟିଏ ଟଙ୍କାରୁ କମ୍‌ରେ ମାତ୍ର କେଇ ସେକେଣ୍ଡ ଭିତରେ ଦିଲ୍ଲୀ ପହଞ୍ଚିଯିବ। ତେଣୁ ଆଜିର ଇ-ଡାକ ଦୁନିଆରେ ପାରମ୍ପାରିକ ଡାକ ବ୍ୟବସ୍ଥାକୁ ଗେଣ୍ଡା-ଡାକ କୁହାଯାଉଛି। ଇ-ଡାକଟି ଯେଉଁ ଲୋକଙ୍କ ପାଖକୁ ଯାଇଥିଲା, ତାଙ୍କଠାରୁ ପ୍ରାପ୍ତିସ୍ୱୀକାର ମଧ୍ୟ ତୁମେ ପାଇପାରିବ। ତୁମେ ଏହା ବି ଜାଣିପାରିବ ଯେ ସେହି ବ୍ୟକ୍ତିଟି ଚିଠି ପଢ଼ିଛନ୍ତି ନା ନାହିଁ।

ବର୍ତ୍ତମାନ ଅନେକ ସଂସ୍ଥା ସେମାନଙ୍କର କର୍ମଚାରୀଙ୍କୁ ମାଗଣାରେ ଇଣ୍ଟରନେଟ ସୁବିଧା ଯୋଗାଇ ଦେଉଛନ୍ତି। ତେଣୁ ସେହିସବୁ ଜାଗାରୁ ଇ-ଡାକ ପଠାଇଲେ ତୁମକୁ କିଛି ଖର୍ଚ୍ଚ ପଡ଼ିବନାହିଁ। ଯଦି ବି ତୁମେ ଘଣ୍ଟାକୁ ୧୫ରୁ ୨୦ ଟଙ୍କା ଦେଇ *ଇଣ୍ଟରନେଟ୍ କାଫେ* ବ୍ୟବହାର କରୁଥାଅ, ତୁମକୁ ଇ-ଡାକଟିଏ ପଠାଇବାକୁ ଗୋଟିଏ ମିନିଟରୁ କମ୍ ସମୟ ଲାଗିବ। ଅବଶ୍ୟ ତୁମେ ତୁମର ଚିଠିକୁ କମ୍ପ୍ୟୁଟରରେ ଆଗରୁ ପ୍ରସ୍ତୁତ କରି ଫ୍ଲପିରେ ରଖିଥିବ, ଫଳରେ ଇଣ୍ଟରନେଟ ସହିତ ଯୋଡ଼ାଥିବା ବେଳେ ତୁମକୁ ଟାଇପ କରିବା ଦରକାର ପଡିବନାହିଁ। ତୁମର ଲେଖାକୁ କେବଳ ଚିଠି ଦେହକୁ ନକଲ କରିବାକୁ ହେବ।

ଇ-ଡାକର ବ୍ୟବହାର ଯୋଗୁଁ ପ୍ରଦର୍ଶନୀରେ ବାହାର ସ୍କୁଲର ଯୋଗଦାନ ବିଷୟରେ ତୁମେ ନିଶ୍ଚିତ ହେବ ଏବଂ ଭାଗନେବା ବିଷୟରେ ତାଙ୍କର ବିଭିନ୍ନ ପ୍ରଶ୍ନର ଉତ୍ତର ତୁମେ ଶୀଘ୍ର ଏବଂ ଭଲଭାବରେ ଦେଇପାରିବ। ଦୂର ଯାଗାକୁ ଟେଲିଫୋନ କରିବାର ଖର୍ଚ୍ଚରୁ ମଧ୍ୟ ତୁମେ ବଞ୍ଚିଯିବ।

ଇ-ଡାକ ବ୍ୟବସ୍ଥାଟି ବେଶ୍ ଭଲକଥା ବୋଲି ତୁମେ ଏବେ ଭାବୁନାହଁ କି?

ଇଣ୍ଟରନେଟରେ ଯୋଡ଼ାଥିବା କମ୍ପ୍ୟୁଟରଗୁଡ଼ିକରେ ପ୍ରଚୁର ପରିମାଣର ସୂଚନା ରହିଥାଏ। ବିଭିନ୍ନ ବିଶ୍ୱବିଦ୍ୟାଳୟ ତାଙ୍କର ପାଠ୍ୟକ୍ରମ, ପ୍ରକଳ୍ପ ଓ ଗବେଷଣା କାମ ବିଷୟରେ ବିବରଣୀ ଇଣ୍ଟରନେଟ ସହିତ ଯୋଡ଼ାହୋଇଥିବା କମ୍ପ୍ୟୁଟରରେ ରଖିଥାନ୍ତି। ବାଣିଜ୍ୟ ଓ ବ୍ୟାପାରିକ ସଂସ୍ଥାମାନେ ନିଜର ଉତ୍ପାଦନ ଓ ସେବାର ସୂଚନା ଏବଂ ସାଧାରଣ ଲୋକମାନେ ମଧ୍ୟ ଅନେକ ଉପାଦେୟ ସୂଚନା ସେମାନଙ୍କର କମ୍ପ୍ୟୁଟରରେ ସାଇତି ରଖିଥାନ୍ତି। ଯେକୌଣସି ଲୋକ ଇଣ୍ଟରନେଟ ଜରିଆରେ ଏଗୁଡ଼ିକୁ ମାଗଣାରେ ବ୍ୟବହାର କରିପାରିବ। ଅବଶ୍ୟ କେତେ ପ୍ରକାରର ତଥ୍ୟ ପାଇଁ ଟଙ୍କା ଦେବାକୁ ପଡ଼ିଥାଏ। କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ଇଣ୍ଟରନେଟରେ ସବୁ ପ୍ରକାରର ସୂଚନା ମିଳିପାରେ। ମଣିଷ ସମାଜର ଇତିହାସରୁ ଆରମ୍ଭକରି ବିଶ୍ୱ ବ୍ରହ୍ମାଣ୍ଡ, ବିଶିଷ୍ଟ ମଣିଷ, ଜୀବଜଗତ, ରୋଗ, ଔଷଧ, ବିଜ୍ଞାନ, କଳା, ସଂସ୍କୃତି ଓ ମନୋରଞ୍ଜନ ଆଦି ବିଷୟରେ – ବାସ୍ତବରେ ତୁମେ ଭାବିପାରୁଥିବା ଯେ କୌଣସି ବିଷୟ ଉପରେ – ତଥ୍ୟ ଇଣ୍ଟରନେଟରେ ମିଳିପାରେ। ଏହାହିଁ ଇଣ୍ଟରନେଟକୁ ସୂଚନାର ଏକ ବିଶାଳ ଗନ୍ତାଘର କରି ଗଢ଼ିତୋଳିଛି।

ନେଟରେ କାମ କଲାବେଳେ ତୁମେ ଆହୁରି ମଧ୍ୟ ଅନୁଭବ କରିପାରିବ ଇଣ୍ଟରନେଟ କିପରି ଏକ ବିଶ୍ୱବ୍ୟାପୀ ବଜାର ପାଲଟିଯାଇଛି। ସବୁ ପ୍ରକାରର ଜିନିଷପାଇଁ ତୁମେ ଏଥିରେ ଆଭାସୀ ଦୋକାନ ପାଇବ ଏବଂ ଘରୁ ଗୋଡ଼ ନକାଢ଼ି ମଧ୍ୟ ତୁମେ ଯେ କୌଣସି ଜିନିଷ ଯେ କୌଣସି ଜାଗାରୁ କିଣିପାରିବ। ତୁମ ଆଗରେ ବିକଳ୍ପର ବ୍ୟାପକତା ବଢ଼ିଯାଇଥିବାର ଦେଖିବ ଏବଂ ବେଶ୍ ପ୍ରତିଯୋଗୀ ଦରରେ ଜିନିଷ ପାଇବା ତୁମପାଇଁ ସମ୍ଭବ ହେବ। ଏହି ସବୁ ଇ-ବାଣିଜ୍ୟ ନାମକ ଏକ ନୂଆ ପ୍ରକାରର ବ୍ୟବସାୟର ରୂପ ନେଉଛି।

ଉପର ଭଳି କିଛି ସେବାକୁ ଦେଖି ତୁମେ ନିଜେ ବୁଝିପାରୁଥିବ ଯେ ଇଣ୍ଟରନେଟ ବାସ୍ତବରେ ଆମର ଅନେକ କାମକୁ ପ୍ରଭାବିତ କରିପାରିଛି। ବାସ୍ତବରେ ଏହା ଏକ ନୂଆ ପ୍ରକାରର ବିପ୍ଳବ ଆଣୁଛି। ତେଣୁ ଇଣ୍ଟରନେଟକୁ ଭଲକରି ବୁଝିବା ପାଇଁ ସେଥିରୁ ମିଳୁଥିବା ସୁବିଧାଗୁଡ଼ିକୁ ବୁଝିବାକୁ ଆମେ ଚେଷ୍ଟା କରିବା। କିନ୍ତୁ ତାହା ଆଗରୁ ଏହାର ଆରମ୍ଭ ଏବଂ ବିକାଶ ବିଷୟରେ କିଛି ଦେଖିବା।

### *ଇଣ୍ଟରନେଟର ଜନ୍ମ*

ଇଣ୍ଟରନେଟ କିପରି ଆରମ୍ଭ ହେଲା ଜାଣିବା ପାଇଁ ତୁମେ ନିଶ୍ଚୟ କୌତୂହଳୀ ଥିବ। ପ୍ରକୃତରେ ଏହା ରାତାରାତି ଘଟିଯାଇନାହିଁ। ତଥାପି ଏବେ ଏବେ ଏହାର ବିକାଶର ବେଗ ଅତି ବିସ୍ମୟକର ଭାବରେ ବଢ଼ିଯାଇଛି। ତେଣୁ ଏହାର ଗଭୀରତାକୁ ବୁଝିବାପାଇଁ ଏହାର ଉତ୍ପତ୍ତି ଓ ବିକାଶ ସମ୍ପର୍କରେ କିଛି ଦେଖିବା।

୧୯୬୦ ଦଶକର ଆରମ୍ଭରେ ଆମେରିକାର ପ୍ରତିରକ୍ଷା ବିଭାଗ ତାହାର ବିଭିନ୍ନ ଗବେଷଣା କେନ୍ଦ୍ର ଓ ପ୍ରତିରକ୍ଷା ସମ୍ପର୍କିତ ଗବେଷଣା କରୁଥିବା ବିଶ୍ୱବିଦ୍ୟାଳୟଗୁଡ଼ିକୁ (କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ, ଲସ ଏଞ୍ଜେଲସ୍; କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟ, ଶାନ୍ତା ବାର୍ବାରା; ଷ୍ଟାନ୍‌ଫୋର୍ଡ ଗବେଷଣା ପ୍ରତିଷ୍ଠାନ ଓ ୟୁଟା ବିଶ୍ୱବିଦ୍ୟାଳୟ ଇତ୍ୟାଦି) ଏକ ବିଶେଷ ଧାରାରେ ଯୋଡ଼ିବାପାଇଁ ଚାହିଁଲେ। ଯେପରି ଶତ୍ରୁ ପକ୍ଷର ବୋମା ମାଡ଼ରେ କିଛି କମ୍ପ୍ୟୁଟର ନଷ୍ଟ ହୋଇଗଲେ ମଧ୍ୟ ଗୋଟିଏ କମ୍ପ୍ୟୁଟରରୁ ଅନ୍ୟ କମ୍ପ୍ୟୁଟରକୁ ସହଜରେ ତଥ୍ୟ ନେଇଆଣି ହେବ। ଏଥିରୁ ସୃଷ୍ଟି ହେଲା *ଆର୍ପାନେଟ* (ARPA – ଉନ୍ନତ ଗବେଷଣା ପ୍ରକଳ୍ପ ସଂସ୍ଥା) ନାମକ ଏକ ନେଟୱର୍କ ଏବଂ ତାହା ହେଲା ଇଣ୍ଟରନେଟର ପୂର୍ବଜ।

ଧୀରେ ଧୀରେ ଅନ୍ୟ କେତେ ଶିକ୍ଷା ଓ ଗବେଷଣା କେନ୍ଦ୍ର ମଧ୍ୟ ଏହି ନେଟୱର୍କରେ ମିଶିଲେ। ଫଳରେ ସେହି ନେଟୱର୍କର ବ୍ୟାପକତା ବଢ଼ିଲା ଏବଂ ଶେଷରେ ଆର୍ପାନେଟ ଇଣ୍ଟରନେଟର ପରିଚୟ ପାଇଲା।

ଆରମ୍ଭରୁ ବେଶ୍ କିଛିସମୟ ପାଇଁ ଏହି ନେଟୱର୍କକୁ କେବଳ ପେଶାଦାର କମ୍ପ୍ୟୁଟର କର୍ମୀ, ଇଞ୍ଜିନିୟର

**ଇଣ୍ଟରନେଟ୍ – ଏକ ଇଲେକ୍ଟ୍ରୋନିକ୍ ସହର**

ଇଣ୍ଟରନେଟ୍ ଓ ଏହାର ବ୍ୟବହାର ବିଷୟରେ ଏକ ଧାରଣା ଦେବାପାଇଁ ଆମେ ତାହାକୁ ଗୋଟିଏ ଇଲେକ୍ଟ୍ରୋନିକ ସହର ଭାବରେ କଳ୍ପନା କରିବା। ସେଥିରେ ରହିବ ତୁମର ଗୋଟିଏ *ହୋମ୍* ବା **ଆସ୍ଥାନ**। ନିଜ ଘର ଭିତରେ ନିଜ କମ୍ପ୍ୟୁଟର ଚଳାଇ ତୁମେ ଏହି ଆସ୍ଥାନରୁ ତୁମର ଯାତ୍ରା ଆରମ୍ଭ କରିବ। ଏହି ଇଲେକ୍ଟ୍ରୋନିକ ସହରରେ ଅଛି ଲାଇବ୍ରେରୀ ଯାହାର ବହି ତାଲିକା ବା *କାଟଲଗ* ତୁମେ କମ୍ପ୍ୟୁଟରରେ ଦେଖିପାରିବ। ବ୍ୟବସାୟ କେନ୍ଦ୍ର ଓ ଶିଳ୍ପସ୍ଥଳରେ ଦ୍ରବ୍ୟ ଓ ସେବାର କିଣାବିକା କରିପାରିବ; ଶିକ୍ଷାନୁଷ୍ଠାନ – ଛାତ୍ର, ଶିକ୍ଷକ ଓ ପ୍ରଶାସକଙ୍କ ପାଇଁ ଅଳ୍ପମୂଲ୍ୟରେ ସାଧନ ସାମଗ୍ରୀ ଯୋଗାଉଥିବା ସ୍ଥାନ; କଲେଜ – କମ୍ପ୍ୟୁଟର ଜରିଆରେ ତାଙ୍କର ପାଠ୍ୟକ୍ରମରେ ନାମ ଲେଖାଇପାରିବ; ଡାକଘର – ତୁମର ଇଲେକ୍ଟ୍ରନିକ ଚିଠି ବାକ୍ସ ଜରିଆରେ ଖବର ପାଅ କିମ୍ବା ସାଙ୍ଗ ପାଖକୁ ଇ-ଡାକ ପଠାଅ; ପ୍ରଶାସନ କେନ୍ଦ୍ର – ସରକାରୀ ନିୟମ କାନୁନ ବିଷୟରେ ଏଠାରୁ ତଥ୍ୟ ମିଳିପାରିବ। ଏବଂ ରହିଛି ଏହିଭଳି ଆହୁରି ଅନେକ ସଂସ୍ଥା। ଏହା ଆଭାସୀ ଦୁନିଆ ଯେଉଁଠାରେ ତୁମେ ବାସ୍ତବ ଦୁନିଆର କାମ ଭଳି ଅନେକ କିଛି କରିପାର। ଏହା *ସାଇବରସ୍ପେସ୍* ବା **ଆଭାସୀ ଜଗତ** ନାମରେ ମଧ୍ୟ ଜଣା ଏବଂ ଏହା ଆମର ସବୁ କାମ ଉପରେ ବିରାଟ ପ୍ରଭାବ ପକାଉଛି – ବ୍ୟବସାୟ, ପ୍ରଶାସନ, ସେବା ଶିଳ୍ପ ଆଦି ଚଳାଇବା, ପ୍ରଶିକ୍ଷଣ ଯୋଗାଇବା, ଇତ୍ୟାଦି, ଇତ୍ୟାଦି।

ଓ ବୈଜ୍ଞାନିକମାନେ କାମରେ ଲଗାଇ ପାରୁଥିଲେ। କାରଣ ଏହା କିପରି କାମକରେ ଏବଂ ଏହାର ସଫଳ ବ୍ୟବହାର ପାଇଁ କ'ଣ କରିବାକୁ ହେବ ତାହା କେବଳ ସେହିମାନଙ୍କୁ ଜଣାଥିଲା। ୧୯୮୦ ଦଶକର ଆରମ୍ଭରେ ୟୁଜନେଟ୍, ସମ୍ବାଦମଞ୍ଚ (*ନିଉଜଗ୍ରୁପ*) ଓ ଇଲେକ୍ଟ୍ରନିକ ଡାକ ବ୍ୟବସ୍ଥା ଭଳି କିଛି ସେବା ଇଣ୍ଟରନେଟରେ ମିଶିଲା। ସେହି ୧୯୮୦ ଦଶକର ଶେଷ ଭାଗରେ ଇଣ୍ଟରନେଟରେ ତଥ୍ୟ ଖୋଜିବା ପାଇଁ ***ଆର୍ଚି* ଓ *ୱାଇସ*** (WAIS – ବ୍ୟାପକ କ୍ଷେତ୍ର ସୂଚନା ସେବକ) ଭଳି କିଛି ସୂଚୀର ବିକାଶ ଘଟିଲା। ବ୍ୟବହାରକାରୀ ପାଇଁ ଏକ ସରଳ ଓ ସହଜ ଅନ୍ତରାପୃଷ୍ଠ ଯୋଗାଇବା ଲକ୍ଷରେ ୧୯୯୧ ମସିହାରେ ମିନେସୋଟା ବିଶ୍ୱବିଦ୍ୟାଳୟ ***ଗୋଫର*** ନାମରେ ଏକ ମେନୁ ବ୍ୟବସ୍ଥା ତିଆରି କଲେ। ଏହା ସାହାଯ୍ୟରେ ବିଭିନ୍ନ ତଥ୍ୟ ଫାଇଲ ଖୋଲାଯାଇପାରିଲା। ଇଣ୍ଟରନେଟକୁ ବ୍ୟବହାର କରିବାରେ ଏହି ସବୁ ନୂଆ ବ୍ୟବସ୍ଥା ସାଧାରଣ ଲୋକଙ୍କୁ ବିଶେଷ ସାହାଯ୍ୟ କଲା। କିନ୍ତୁ ସବୁଠାରୁ ବଡ଼ ସାହାଯ୍ୟ ଆସିଲା WWW ବ୍ୟବସ୍ଥାରୁ – ଏହା ଜନସାଧାରଣଙ୍କ ଭିତରେ ଇଣ୍ଟରନେଟକୁ ପ୍ରକୃତରେ ଲୋକପ୍ରିୟ କରାଇପାରିଲା।

୧୯୯୧ ମସିହା ବେଳକୁ *ବିଶ୍ୱବ୍ୟାପୀ ଜାଲକ* (WWW – *ୱାର୍ଲଡ ୱାଇଡ ୱେବ* ବା '*ୱେବ*') ନାମକ ଏକ ନୂଆ ତତ୍ତ୍ୱ ଜନ୍ମ ନେଲା। ୟୁରୋପର କଣିକା ପଦାର୍ଥବିଜ୍ଞାନ ଗବେଷଣା ପ୍ରତିଷ୍ଠାନ (CERN) ଠାରେ କାମ କରୁଥିବା ଟିମ ବର୍ଣ୍ଣର୍ସ୍-ଲି ଓ ଅନ୍ୟମାନଙ୍କ ଦ୍ୱାରା ଏହାକୁ ରୂପ ଦେଇଥିଲେ। **ଅତିସଂଯୋଗ** ବା *ହାଇପରଲିଙ୍କ* ଜରିଆରେ ଇଣ୍ଟରନେଟର ବିଭିନ୍ନ କମ୍ପ୍ୟୁଟରରେ ଗଚ୍ଛିତ ବିଷୟକୁ ଯୋଡ଼ିପାରିବାର କ୍ଷମତା ବିଶ୍ୱବ୍ୟାପୀ ୱେବ ଟେକ୍ନୋଲଜିରେ ରହିଛି। ଏହା ଅତିରଚନା ବା *ହାଇପରଟେକ୍ସଟ* ତତ୍ତ୍ୱ ଉପରେ ଆଧାରିତ, ଯାହା ଉପଯୁକ୍ତ ସଂଯୋଗ ଉପରେ ଚାବି ଦବାଇ ବିଭିନ୍ନ ପୃଷ୍ଠାରେ ଥିବା ତଥ୍ୟ ଭିତରେ ବାଟ୍ କଢ଼ାଇବା (*ନେଭିଗେଟ*) କାମକୁ ସମ୍ଭବ କରିଥାଏ। ଏହି ଧାରଣାଟି ଆହୁରି ସ୍ପଷ୍ଟ ହେବ ଯେତେବେଳେ ତୁମେ ବିଭିନ୍ନ ୱେବସ୍ଥଳୀ (*ୱେବସାଇଟ*) ଭିତରେ ଘୂରିବୁଲିବ ବା *ସର୍ଫିଙ୍ଗ* କରିବାକୁ ଆରମ୍ଭ କରିବ।

### ଅତିରଚନା ବା ହାଇପରଟେକ୍ସଟ କ'ଣ ?

ହାଇପରଟେକ୍ସଟ ହେଉଛି ଏକ ପ୍ରକାରର ଲେଖା ଯାହାର ଶବ୍ଦଗୁଡ଼ିକ ଅନ୍ୟ କେଉଁ ଲେଖା ସହିତ ସମ୍ପର୍କ ରଖିଥାଏ। ଏହି ଶବ୍ଦଗୁଡିକୁ ସଂଯୋଗ ବା *ଲିଙ୍କ* କୁହାଯାଏ ଏବଂ ବ୍ୟବହାରକାରୀ ଏଗୁଡ଼ିକୁ ବାଛିପାରେ – କୌଣସି ଲିଙ୍କର ପାଖକୁ ଗଲେ ଦର୍ଶିକା (*କର୍ସର*) ତା'ର ଆକୃତି ବଦଳାଇଦିଏ। କୌଣସି ହାଇପରଟେକ୍ସଟ ଲେଖା ଆହୁରି ଅନେକ ଲେଖା ସହିତ ଲିଙ୍କ ରଖିପାରେ। ୱେବ ପରିପ୍ରେକ୍ଷୀରେ ଶବ୍ଦ ବା ଚିତ୍ର ମଧ୍ୟ ଅନ୍ୟ ପାଠ୍ୟ, ଚିତ୍ର, ଭିଡିଓ ବା ଧ୍ୱନି ସହିତ ସଂଯୋଗର କାମ କରିପାରେ।

ଆଗରୁ ଆମେ କହିଛେ ଯେ WWW ଆସିବା ପରେ ହିଁ ସାଧାରଣ ଜନତାଙ୍କ ଭିତରେ ଇଣ୍ଟରନେଟ ପ୍ରିୟ ହୋଇପାରିଛି। ଯେଉଁ ଇଣ୍ଟରନେଟ ଦିନେ କେବଳ ଅଧ୍ୟାପକ ବା ବିଜ୍ଞାନୀଙ୍କ ଭିତରେ ଆଦର ପାଉଥିଲା ହଠାତ ତାହା ନିଜେ ଏକ ଆନ୍ଦୋଳନ ପାଲଟିଗଲା। ଇଣ୍ଟରନେଟକୁ ବ୍ୟବହାର କରୁଥିବା ଅନେକ ଲୋକଙ୍କ ପାଖରେ ପହଞ୍ଚିବା ପାଇଁ ଶିଳ୍ପାନୁଷ୍ଠାନମାନେ ମଧ୍ୟ ଏହାକୁ ଆପଣାଇନେଲେ। ଏହା ଫଳରେ ଇଣ୍ଟରନେଟ ଏକ ପ୍ରତିରକ୍ଷା ନେଟୱର୍କ ରୂପରୁ ବାହାରି ବାସ୍ତବରେ ଏକ ବିଶ୍ୱବ୍ୟାପୀ ସର୍ବସାଧାରଣ ନେଟୱର୍କ ହୋଇଗଲା।

### *ବିଶ୍ୱବ୍ୟାପୀ ୱେବ*

ଆମେ ଦେଖିଲେ ଯେ ଅତିରଚନା କୌଶଳ ବଳରେ ବିଶ୍ୱବ୍ୟାପୀ ୱେବ ବିଭିନ୍ନ ଇଣ୍ଟରନେଟ ସେବକରେ ରହିଥିବା ପୃଷ୍ଠାଗୁଡ଼ିକୁ ଖୋଲିପାରେ। ଲକ୍ଷ କରିବା କଥା ଯେ ଅନ୍ୟ ପୃଷ୍ଠାମାନଙ୍କ ସହିତ ସଂଯୋଗ ରଖିଥିବା, ଲେଖା ଓ ଛବି ଥିବା, ପୃଷ୍ଠାଗୁଡ଼ିକୁ ୱେବପୃଷ୍ଠା କୁହାଯାଏ। କୌଣସି ସଂସ୍ଥାର ସବୁ ସମ୍ପର୍କିତ ପୃଷ୍ଠାଗୁଡ଼ିକୁ ମିଶାଇଲେ ୱେବସ୍ଥଳୀ ବା ୱେବସାଇଟ ତିଆରି ହୁଏ। ଗୋଟିଏ ୱେବ ସେବକ ଭିତରେ ସବୁ ପ୍ରକାରର ୱେବପୃଷ୍ଠା ରହିଥାଏ ଯାହାକୁ ଇଣ୍ଟରନେଟ ଜରିଆରେ ଯେ କେହି ଖୋଲିପାରିବ।

ଯଦି ତୁମର ସ୍କୁଲ ଗୋଟିଏ ୱେବସ୍ଥଳୀ ତିଆରି କରିବାକୁ ଚାହେଁ ତେବେ ପ୍ରଥମେ ସ୍କୁଲର ଇତିହାସ, ଲକ୍ଷ, ଶ୍ରେଣୀସଂଖ୍ୟା, ବାର୍ଷିକ କ୍ୟାଲେଣ୍ଡର, ସ୍କୁଲର ପିଲାମାନଙ୍କୁ ମିଳିଥିବା ବିଭିନ୍ନ ସମ୍ମାନ ଏବଂ ସ୍କୁଲ ବିଷୟରେ ଜାଣିବାକୁ ଚାହୁଁଥିବା ଲୋକମାନଙ୍କ ପାଇଁ ଅନ୍ୟ ଉପଯୋଗୀ ସୂଚନା ସବୁକୁ ନେଇ କେତେଗୁଡ଼ିଏ ୱେବପୃଷ୍ଠା ତିଆରି କରିବାକୁ ହେବ। ତୁମ ସ୍କୁଲର ବଣଭୋଜୀ ବା ବାର୍ଷିକ ଉତ୍ସବର ଫଟୋ ମଧ୍ୟ ତୁମେ ସେଥିରେ ରଖିପାରିବ। ସେହି ୱେବସ୍ଥଳୀର ଗୋଟିଏ ପୃଷ୍ଠାରୁ ଅନ୍ୟ ପୃଷ୍ଠାକୁ ଅନେକ ସଂଯୋଗ ରହିବ, ଅନ୍ୟ ସ୍କୁଲ ବା ବିଭିନ୍ନ ବିଷୟରେ ମଜାଦାର ସୂଚନା ଥିବା ୱେବସ୍ଥଳୀଗୁଡ଼ିକ ସହିତ ବା ପିଲାମାନଙ୍କର ବ୍ୟକ୍ତିଗତ ପୃଷ୍ଠା ସହିତ ମଧ୍ୟ ସଂଯୋଗ ରହିପାରିବ।

### ପୋର୍ଟାଲ କ'ଣ ?

ପ୍ରବେଶଦ୍ୱାର ବା *ପୋର୍ଟାଲ* ହେଉଛି ଏକ ୱେବସ୍ଥଳୀ ଯାହାର ପୃଷ୍ଠାକୁ ତୁମର ବ୍ରାଉଜର ପ୍ରଥମେ ଦେଖାଇବ। ଅର୍ଥାତ, ପୋର୍ଟାଲ ହେଉଛି ସେହି ସ୍ଥାନ ଯେଉଁଠି ତୁମର ବ୍ରାଉଜିଙ୍ଗ ଅନୁଭୂତି ଆରମ୍ଭ ହେବ। ୟାହୁ! (Yahoo!), ଏକ୍ସାଇଟ୍ (Excite) ବା ଲାଇକସ୍ (Lycos) ଭଳି ପୋର୍ଟାଲଗୁଡ଼ିକ ୱେବ ଅନୁଭୂତି ବଢ଼ାଇବା ପାଇଁ ଅନେକ ମାଗଣା ସେବା ଯୋଗାନ୍ତି। ୱେବ ଗାଇଡ୍, ସନ୍ଧାନୀ କଳ (ସର୍ଚ୍ଚ ଇଞ୍ଜିନ), ଆଳାପ ଆସର (ଚାଟ ରୁମ୍), ଇ–ମେଲ, ଖେଳ ଘର (ଗେମ ରୁମ୍), ଖବର କେନ୍ଦ୍ର (ମେସେଜ ବୋର୍ଡ), ମାନଚିତ୍ର ଓ ଖବର (ନିଉଜ ସର୍ଭିସ) ଏହି ମାଗଣା ସେବାର କିଛି ଉଦାହରଣ।




ଇଣ୍ଡିଆଟାଇମ୍‌ସ୍ ୱେବସ୍ଥଳୀ – ଏକ ପ୍ରବେଶଦ୍ୱାର ବା *ପୋର୍ଟାଲ୍ ।*

ସ୍କୁଲର ୱେବ ପୃଷ୍ଠା ସବୁ ଗୋଟିଏ ୱେବ ସେବକରେ ଗଚ୍ଛିତ ରହିବ ଯାହାକି ଇଣ୍ଟରନେଟ ସହିତ ସିଧାସଳଖ ସଂଯୁକ୍ତଥିବା ଗୋଟିଏ କମ୍ପ୍ୟୁଟର । ପ୍ରତ୍ୟେକ ୱେବ ସେବକର ଗୋଟିଏ ଅଲଗା ଠିକଣା ରହିଥାଏ ଯାହାକୁ *ଆଇପି* (IP) ଠିକଣା କୁହାଯାଏ । ଏହି ଠିକଣା ୧୨୮.୫୭.୧୨.୫୬ ଭଳି କିଛି ସଂଖ୍ୟା ହୋଇଥାଏ । ପ୍ରତ୍ୟେକ ୱେବସ୍ଥଳୀର ଆଉ ଗୋଟିଏ ସ୍ୱତନ୍ତ୍ର ଠିକଣା ବା ୟୁଆରଏଲ୍. (URL) ରହିଥାଏ ଯାହାକୁ ବ୍ୟବହାର କରି ଆମେ ସେହି ନିର୍ଦ୍ଦିଷ୍ଟ ୱେବସ୍ଥଳୀକୁ ଯାଇପାରିବା । ତୁମ ସ୍କୁଲର ନାଁ ଯଦି ମାନବ ଏକାଡେମୀ ହୋଇଥାଏ ତେବେ ତୁମର ୱେବସ୍ଥଳୀର ଠିକଣା ହୋଇପାରେ –

http://www.manavacademy.org

* ଏଠାରେ http ଅର୍ଥ ହେଉଛି *ହାଇପରଟେକ୍ସଟ ଟ୍ରାନ୍‌ସଫର ପ୍ରୋଟୋକଲ* ବା ଅତିରଚନା ପ୍ରେରଣ ରୀତି (ପ୍ରୋଟୋକଲ ବା ରୀତି ଉପରେ ଆମର ଆଲୋଚନା କଥା ମନେପକାଅ) । ଇଣ୍ଟରନେଟ ଜରିଆରେ ଇ-ଡାକ, ଫାଇଲ ଓ ଅନ୍ୟ ସବୁ ସୂଚନା ପଠାଇବା ପାଇଁ ଏହା ହେଉଛି ବିଶ୍ୱବ୍ୟାପୀ ୱେବର ରୀତି । କାମରେ ଲାଗୁଥିବା ଅନ୍ୟ ରୀତିଗୁଡ଼ିକ ହେଲେ ftp, telenet, gopher, mail ବା news । ଏହିଗୁଡ଼ିକ ହେଲେ ବିଭିନ୍ନ ପ୍ରକାରର ସେବା ଯାହା ବିଷୟରେ ଆମେ ଶୀଘ୍ର ଜାଣିବା ।
* manavacademy.org ହେଉଛି ତୁମ ସେବକ ବା ପରିସର *(ଡୋମେନ)*ର ନାମ । ଏହା ପ୍ରକୃତରେ ହେଉଛି ତୁମର ୱେବପୃଷ୍ଠା ରହିଥିବା କମ୍ପ୍ୟୁଟରର ଠିକଣା ।

ଯଦି ଦ୍ୱିତୀୟ ଶ୍ରେଣୀ ଛାତ୍ରଙ୍କର ସମ୍ମାନ ତାଲିକା ପାଇଁ ତୁମର ଏକ ଅଲଗା ପୃଷ୍ଠା ଅଛି, ତାହାହେଲେ ସେହି ପୃଷ୍ଠାର ୟୁଆରଏଲ ଏହିପରି ହେବ –

http://www.manavacademy.org/classii/honours.html.

**ପରିସର ବା ଡୋମେନର ଲାଞ୍ଛ?**

ୱେବ ସେବକକୁ ପରିସର ମଧ୍ୟ କୁହାଯାଏ। ତୁମେ ଲକ୍ଷ କରିଥିବ ଯେ ପରିସର ନାଁର ଶେଷରେ ତିନି ଅକ୍ଷରିଆ ଲାଞ୍ଛଟିଏ ରହିଛି ଓ ତାହା ଆଗରୁ ଗୋଟିଏ ବିନ୍ଦୁ ରହିଛି। ଉପରେ ଥିବା ସ୍କୁଲର ଉଦାହରଣରେ ଏହା ହେଉଛି '.org'। ଏହି ଲାଞ୍ଛ ସାଧାରଣତଃ ୱେବସ୍ଥଳୀର ପ୍ରକାରକୁ ସୂଚାଇ ଥାଏ। ଯେପରି '.org' ଏକ ସଂସ୍ଥାକୁ ବୁଝାଏ। ଅର୍ଥାତ ମାନବ ଏକାଡେମୀର ଲାଞ୍ଛ ତାହାକୁ ଏକ ଅଣବ୍ୟାବସାୟିକ ସଂସ୍ଥା ଭାବରେ ଜଣାଇଦିଏ। '.com' ଏକ ବ୍ୟାବସାୟିକ ସଂସ୍ଥାକୁ ବୁଝାଏ, ଯଥା www.oricomindia.com। ସେହିପରି '.edu' ବିଶ୍ୱବିଦ୍ୟାଳୟ ବା ଅନ୍ୟ ଉଚ୍ଚତର ଶିକ୍ଷାନୁଷ୍ଠାନ ସବୁର ଲାଞ୍ଛ ହୋଇଥାଏ। ବିଭିନ୍ନ ସରକାରୀ ସଂସ୍ଥା ପାଇଁ '.gov', ଏବଂ ପ୍ରତିରକ୍ଷା ସଂସ୍ଥା ପାଇଁ '.mil' ବ୍ୟବହୃତ ହୋଇଥାଏ। ବୁଝିବା ଦରକାର ଯେ ଏସବୁ ନାଁ ଯୁକ୍ତରାଷ୍ଟ୍ର ଆମେରିକାରେ ଥିବା ସେବକରେ ରଖାଯାଇଥିବା ପରିସର ନାମକୁ ବୁଝାଏ। ଅନ୍ୟ ଦେଶର ସେବକରେ ଥିବା କ୍ଷେତ୍ର ସବୁକୁ ସୂଚାଇବା ପାଇଁ ଦୁଇ ଅକ୍ଷର ବିଶିଷ୍ଟ ଏକ ଅତିରିକ୍ତ ଲାଞ୍ଛ ଯୋଡ଼ିବାକୁ ହୁଏ। ଉଦାହରଣ ସ୍ୱରୂପ, www.umanitoba.edu.ca କାନାଡ଼ାରେ (.ca) ଥିବା ମାନିଟୋବା ବିଶ୍ୱବିଦ୍ୟାଳୟକୁ ବୁଝାଏ। ଆମ ଦେଶ ଭାରତ ପାଇଁ '.in' ଅତିରିକ୍ତ ଲାଞ୍ଛ ଲଗାଯାଏ, ଯଥା www.iimahd.ernet.in ଅହମ୍ମଦାବାଦରେ ଥିବା ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ୍ ମ୍ୟାନେଜମେଣ୍ଟକୁ ସୂଚାଏ।

* ଏଠାରେ 'classii' ହେଉଛି ତୁମର ୱେବ ସେବକରେ ଥିବା ଏକ ଡାଇରେକ୍ଟୋରିର ନାଁ ଯେଉଁଠି କେତୋଟି ନିର୍ଦ୍ଦିଷ୍ଟ ଫାଇଲ ନିକ୍ଷିପ୍ତ ଥିବ।
* honours.html ହେଉଛି ପୃଷ୍ଠାର ନାଁ (ଫାଇଲ ନାମ) ଯେଉଁଠି ସମ୍ମାନ ତାଲିକା ରହିଛି।

ୟୁଆରଏଲ କ'ଣ ତାହା ଆମେ କହିସାରିଛେ, ତଥାପି ତାହା ବିଷୟରେ ଅଧିକ ସ୍ପଷ୍ଟ ହେବା ଦରକାର। ୟୁଆରଏଲ ଅର୍ଥ *ୟୁନିଫର୍ମ ରିସୋର୍ସ ଲୋକେଟର* (ସମରୂପ ସାଧନ ସୂଚକ)। ଏହା ଗୋଟିଏ ଇଣ୍ଟରନେଟ ଫାଇଲର ଠିକଣା। ଯେହେତୁ ଏହା ଫାଇଲର ସ୍ଥିତି ସୂଚାଏ ଏବଂ ଇଣ୍ଟରନେଟର ସବୁ କମ୍ପ୍ୟୁଟର ପାଇଁ ତାହା ଏକାଭଳି ହୁଏ, ଏହାକୁ ସମରୂପ ସାଧନ ସୂଚକ ବା *ୟୁନିଫର୍ମ ରିସୋର୍ସ ଲୋକେଟର* କୁହାଯାଏ।

*ଏଚଟିଏମଏଲ କ'ଣ?*

ୱେବ ପୃଷ୍ଠାଗୁଡ଼ିକ *ହାଇପରଟେକ୍ସଟ ମାର୍କଅପ ଲାଙ୍ଗୁଏଜ* ବା ଏଚଟିଏମଏଲ (ଅତିରଚନା ପ୍ରଦର୍ଶକ ଭାଷା) ନାମକ ଭାଷାରେ ତିଆରି କରାଯାଏ। ଲେଖାର ଏକ ବିଭିନ୍ନ ଅଂଶ କିଭଳି ରୂପ ନେବ ତାହା ସୂଚାଇବା ପାଇଁ କେତେଗୁଡ଼ିଏ ଏଚଟିଏମଏଲ ଟୀକା ବା *ଟ୍ୟାଗ୍* ବ୍ୟବହାର କରାଯାଏ। ଲେଖାର କେଉଁ ଅଂଶର ରୂପ କିଭଳି ହେବ ତାହା ଏହି ଟୀକାରୁ ଜଣାପଡ଼ିଥାଏ। ଅର୍ଥାତ କେଉଁ ଅକ୍ଷର ବଡ଼ ବା ଗାଢ଼ ହେବ, କେଉଁ ଅକ୍ଷର ଢଳିକରି ରହିବ, କେଉଁ ଲେଖାଟି ସଂଖ୍ୟା ସୂଚିତ ହେବ ସେସବୁ ଏଥିରୁ ଜଣା ପଡ଼ିଥାଏ। ଅତିରଚନା ଜରିଆରେ ଅନ୍ୟ ପୃଷ୍ଠାମାନଙ୍କ ସହିତ ସଂଯୋଗ ରଖିପାରୁଥିବାରୁ ଏବଂ ପ୍ରଦର୍ଶକ ଟୀକା ଜରିଆରେ ଲେଖାର ରୂପକୁ ସୂଚାଇପାରୁଥିବାରୁ ଏହି ଭାଷାକୁ ଅତିରଚନା ପ୍ରଦର୍ଶକ ଭାଷା ବା ହାଇପର ଟେକ୍ସଟ ମାର୍କଅପ ଲାଙ୍ଗୁଏଜ ବା ଏଚଟିଏମଏଲ କୁହାଯାଏ। ଏଚଟିଏମଏଲ ଭାଷା ଶିଖିବା ବେଶ୍ ସହଜ। କୌଣସି ଏଚଟିଏମଏଲ ପୃଷ୍ଠା ହେଉଛି ଗୋଟିଏ ସାଧାରଣ ଲେଖାର ପୃଷ୍ଠା ଯେଉଁଥିରେ କିଛି ଟୀକା ମିଶି ରହିଥାଏ। ତେଣୁ ଏଭଳି ପୃଷ୍ଠା ତିଆରି କରିବା ପାଇଁ ଆମେ କୌଣସି ସାଧାରଣ ପାଠ୍ୟ ସଂପାଦକ ବ୍ୟବହାର

କରିପାରିବା ଯେଉଁଥିରେ ଆମକୁ ହାତରେ ଟୀକା ବସାଇବାକୁ ପଡ଼ିବ। କିମ୍ବା ଫ୍ରଣ୍ଟପେଜ ବା ନେଟସ୍କେପ କମ୍ପୋଜର ଭଳି କୌଣସି ଏଚଟିଏମଏଲ ସମ୍ପାଦକ ବ୍ୟବହାର କରି ଟୀକା ବସାଇବା କାମକୁ ଆମେ ସ୍ୱୟଂକ୍ରିୟ ଭାବରେ କରିପାରିବା। ତୁମେ ସହଜରେ ଏଚଟିଏମଏଲ ଭାଷା ଶିଖିପାରିବ ଏବଂ ନିଜର ୱେବପୃଷ୍ଠା ତିଆରି କରିପାରିବ।

*ଆମେ ବିଶ୍ୱବ୍ୟାପୀ ୱେବ (WWW)ରୁ କ'ଣ ପାଇପାରିବା?*

ଏବେ ପ୍ରାୟ ସବୁ ଶିକ୍ଷାନୁଷ୍ଠାନ, ବ୍ୟବସାୟିକ ସଂସ୍ଥା, ସରକାରୀ ସଂସ୍ଥା, ଛୋଟ ବେପାରୀ, ଶିଳ୍ପ ପ୍ରତିଷ୍ଠାନ, ବେସରକାରୀ ସଂଗଠନ, ଏପରିକି ସାଧାରଣ ଜନତା ମଧ୍ୟ ନିଜ ନିଜର ୱେବସ୍ଥଳୀ ରଖିଛନ୍ତି। ୱେବସ୍ଥଳୀ ଜରିଆରେ ପ୍ରତ୍ୟେକେ ନିଜ ବିଷୟରେ ବିଭିନ୍ନ ସୂଚନା, ଯୋଗାଉଥିବା ସେବା ବିଷୟରେ ତଥ୍ୟ ଏବଂ ଅନ୍ୟ ସବୁ ବିବରଣୀ ଜଣାଇପାରନ୍ତି। କେତେକ ୱେବସ୍ଥଳୀରେ କେବଳ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟରେ ଦରକାରୀ ସୂଚନା ରହିଥାଏ। ମାଉସର ସାମାନ୍ୟ ବୋତାମ ଟିପାରୁ ତୁମେ ଯେକୌଣସି ସ୍ଥଳୀରୁ ତଥ୍ୟ ପାଇପାରିବ। ଅବଶ୍ୟ ତୁମକୁ ଉପଯୁକ୍ତ ସ୍ଥଳୀର ଠିକଣା ବା ୟୁଆରଏଲ ସଠିକ ଭାବରେ ଜାଣିବାକୁ ହେବ।

ବର୍ତ୍ତମାନ ଆମେ ଡବ୍ଲ୍ୟୁଡବ୍ଲ୍ୟୁଡବ୍ଲ୍ୟୁର କେତୋଟି ମଜାଦାର ବ୍ୟବହାର ବିଷୟରେ କଥାହେବା ଯେଉଁଥିରୁ ତୁମେ ବୁଝିପାରିବ ତାହା କେତେ ଉପଯୋଗୀ। ଅବଶ୍ୟ ତୁମେ ବିଭିନ୍ନ ୱେବସ୍ଥଳୀ ଭିତରଦେଇ ଯାଇପାରିବ ଏବଂ ଏହି ୱେବ (ଡବ୍ଲ୍ୟୁଡବ୍ଲ୍ୟୁଡବ୍ଲ୍ୟୁ) ବିଷୟରେ ଅଧିକ ଜାଣିପାରିବ।

ଫେଡେରାଲ ଏକ୍ସପ୍ରେସ ନାମରେ ଏକ ଘରୋଇ ଡାକ (*କୋରିଅର*) କମ୍ପାନୀ ଅଛି। ଏହା ଅନେକ ଦେଶରେ କାମକରୁଛି ଏବଂ ବେଶ୍ ପରିମାଣର ଡାକ ଓ ଜିନିଷପତ୍ର ନେବା ଆଣିବା କରୁଛି। ମନେକର ତୁମେ ନିଉୟର୍କରେ ଥିବା ଜଣେ ସାଙ୍ଗ ପାଖକୁ ପାର୍ସଲଟିଏ ପଠାଇବାକୁ ଚାହିଁଲ। ତୁମେ ତାହା ସ୍ଥାନୀୟ ଫେଡ଼େରାଲ ଏକ୍ସପ୍ରେସ୍ କାର୍ଯ୍ୟାଳୟକୁ ଦେଇପାରିବ। ସେମାନେ ତୁମକୁ କଥାଦେବେ ଯେ ନିର୍ଦ୍ଦିଷ୍ଟ କେତେଦିନ ଭିତରେ ତାହା ନିଉୟର୍କରେ ପହଞ୍ଚାଇଦେବେ। ଦିନକ ପରେ ଯଦି ତୁମେ ତୁମର ପାର୍ସଲ କେଉଁଠି ଅଛି ଏବଂ ପ୍ରକୃତରେ ତାହା ଯାଉଛି ନା ନାହିଁ ଜାଣିବାକୁ ଚାହିଁଲ, ତେବେ ତୁମକୁ ଫେଡେରାଲ ଏକ୍ସପ୍ରେସ କାର୍ଯ୍ୟାଳୟକୁ ଫୋନ କରିବାକୁ ହେବନାହିଁ। ତାହା ବଦଳରେ ତୁମେ ତାହାର ୱେବସ୍ଥଳୀ www.fedex.comକୁ ଯାଇ ସେହି ତଥ୍ୟ ପାଇପାରିବ। ତୁମଠାରୁ ପାର୍ଶଲଟି ରଖିଲାବେଳେ ଫେଡେକ୍ସ ତୁମକୁ ନିଶ୍ଚୟ ଗୋଟିଏ ନମ୍ବର ଦେଇଥିବ ଯାହାକୁ ସନ୍ଧାନୀ ସଂଖ୍ୟା ବା ଟ୍ରାକିଙ୍ଗ ନମ୍ବର କୁହାଯାଏ। ସେହି ସଂଖ୍ୟାଟି କେବଳ ତୁମର ପାର୍ସଲକୁ ହିଁ ଚିହ୍ନଟ କରିବ। ଫେଡେକ୍ସ ୱେବସ୍ଥଳୀର ଆସ୍ଥାନ ପୃଷ୍ଠା ବା ହୋମପେଜ୍‌ର ସୂଚିତ ଜାଗାରେ ତୁମେ ଏହି ସନ୍ଧାନୀ ସଂଖ୍ୟାଟି ଲେଖି 'ଖୋଜି ବାହାର କର' ନିର୍ଦ୍ଦେଶଦେଲେ ତୁମ ପାର୍ଶଲଟି ସେସମୟରେ କେଉଁଠି ଅଛି ମାତ୍ର କେଇ ସେକେଣ୍ଡ ଭିତରେ ତାହାର ଖବର ତୁମକୁ ମିଳିଯିବ। ତୁମ ସାଙ୍ଗ ପାଖରେ ତାହା କେବେ ପହଞ୍ଚିଲା ତାହା ମଧ୍ୟ ତୁମେ ଜାଣିପାରିବ।

ଏହା କିପରି ହେଉଛି ତାହା ତୁମେ ଅନୁମାନ କରିପାରୁଛ କି? ଫେଡେକ୍ସ ଲୋକଟି ତୁମର ପାର୍ଶଲଟି ନେଲାବେଳେ ତାଙ୍କର କମ୍ପ୍ୟୁଟରରେ ତାହାର ସବୁ କଥା ଭରିଦେଲା। ତା'ପରଠାରୁ ସେହି ପାର୍ଶଲ ଯେକୌଣସି ଜାଗାକୁ ଗଲା ବା ଯେଉଁଠି ଅଟକିଲା, ସେଠାରେ ସମୟ ଓ ତାରିଖ ଆଦି ଫେଡେକ୍ସ କମ୍ପ୍ୟୁଟରରେ ପୁଣି ଭରାଗଲା। ଫଳରେ ତୁମେ ଯେତେବେଳେ ଫେଡେକ୍ସର ୱେବସ୍ଥଳୀରେ ଏହି ବିଷୟରେ ସୂଚନା ଖୋଜିଲ, ଇଣ୍ଟରନେଟରେ ଯୋଡ଼ିହୋଇଥିବା ଫେଡେକ୍ସ କମ୍ପ୍ୟୁଟର ତାହା ତୁମକୁ ଯୋଗାଇପାରିଲା। ହଜାର ହଜାର ପାର୍ଶଲର ବିବରଣୀ କମ୍ପ୍ୟୁଟରରେ ଭରିବା ଏବଂ ସମୟ ଅନୁସାରେ ତାହାକୁ ବଦଳାଇବା କାମଟି କେତେ ବିରାଟ ହୋଇଥିବ ତାହା ଭାବିପାରୁଛ କି? ଫେଡେକ୍ସ ୱେବସ୍ଥଳୀରେ ପ୍ରତ୍ୟେକ ଦେଶ ପାଇଁ ନିର୍ଦ୍ଦିଷ୍ଟ ତଥ୍ୟ




ଫେଡେରାଲ ଏକ୍ସପ୍ରେସ (ଫେଡେକ୍ସ) ୱେବସ୍ଥଳୀ।

ଅଲଗା ଭାବରେ ରହିଛି। ସେହି ୱେବସ୍ଥଳୀରେ 'ଦେଶ' ଜାଗାରେ ଭାରତ ଲେଖିଲେ ଘରୋଇ ଡାକ କମ୍ପାନୀମାନେ ଆମକୁ କିଭଳି ବିଶେଷ ଧରଣର ସେବା ଯୋଗାଉଛନ୍ତି ତାହା ଆମେ ଦେଖିପାରିବା।

ବର୍ତ୍ତମାନ ଆଉ ଗୋଟିଏ ଉଦାହରଣ ନେବା। ମନେକର ତୁମେ ମରିସସ୍ ବୁଲିଯିବ। ଯିବା ଆଗରୁ ତୁମେ ଜାଣିବାକୁ ଚାହିଁବ ମରିସସ୍‌ରେ ଦେଖିବା ପାଇଁ କ'ଣ ସବୁ ଭଲ ଜାଗା ରହିଛି। ସେଠାରେ ତୁମର ରହିବା ପାଇଁ ସେଠାକାର କୌଣସି ହୋଟେଲରେ ଆଗୁଆ ଜାଗା ରଖିପାରିଲେ ବଢ଼ିଆ ହେବନାହିଁ କି? ତୁମର ଉଡ଼ାଜାହାଜ ଟିକେଟ ମଧ୍ୟ କରିବାକୁ ହେବ। ଏସବୁ ପାଇଁ ତୁମ ପାଖରେ କେତେଗୁଡ଼ିଏ ବାଟ ରହିଛି। ମରିସସ୍ ଭ୍ରମଣ ବିଷୟରେ ବହିଟିଏ କିଣିଆଣି ବା ମାଗିଆଣି ସେଥିରୁ ଦର୍ଶନୀୟ ସ୍ଥାନଗୁଡ଼ିକୁ ଜାଣିପାରିବ। ସେ ବହିରୁ ମରିସସ୍‌ର ହୋଟେଲମାନଙ୍କର ଫୋନ ନମ୍ବର ଆଣି କୋଠରୀ ସଂରକ୍ଷଣପାଇଁ ସେମାନଙ୍କୁ ଫୋନକରିବ ବା ତୁମର ଅନୁରୋଧକୁ ଫାକ୍ସ ଯୋଗେ ପଠାଇଦେବ। କୌଣସି ଭ୍ରମଣ ସହାୟକ ବା *ଟ୍ରାଭେଲ ଏଜେଣ୍ଟ* ହୋଟେଲରେ ସ୍ଥାନ ସଂରକ୍ଷଣରେ ତୁମକୁ ସାହାଯ୍ୟ କରିପାରେ। ତୁମର ଟିକେଟପାଇଁ କିଛି ଟ୍ରାଭେଲ ଏଜେଣ୍ଟଙ୍କ ପାଖକୁ ଯିବ ଏବଂ ସେମାନଙ୍କଠାରୁ ସବୁ ତଥ୍ୟ ଆଣିବ। କେଉଁ ଉଡ଼ାଜାହାଜ କମ୍ପାନୀ ଓ କେଉଁ ଟ୍ରାଭେଲ ଏଜେଣ୍ଟ ମିଶିକରି ସବୁଠାରୁ ଭଲ ଦାମରେ ଓ ସୁବିଧାରେ ତୁମର ଯିବା ବ୍ୟବସ୍ଥା କରିପାରିବେ ଦେଖିଲାପରେ ତାଙ୍କଠାରୁ ତୁମର ଟିକେଟ କିଣିବ। କିନ୍ତୁ ଇଣ୍ଟରନେଟର ସାହାଯ୍ୟରେ ଏହିସବୁ କାମ ତୁମେ ତୁମ ଘରେ ବସି ମଧ୍ୟ କରିପାରିବ। ଭ୍ରମଣ ସହାୟକର କାମ କରୁଥିବା ଅନେକଗୁଡିଏ ୱେବସ୍ଥଳୀ ରହିଛି। www.thetrip.com, www.travelocity.com, www.expedia.msn.com ଭଳି ୱେବସ୍ଥଳୀରୁ ତୁମେ ମରିସସରେ ଥିବା ଦର୍ଶନୀୟ ସ୍ଥାନ ସଂପର୍କରେ ଜାଣିପାରିବ, ହୋଟେଲରେ ଜାଗା ରଖିପାରିବ ଏବଂ ଉଡ଼ାଜାହାଜ ଟିକେଟ ମଧ୍ୟ କରିପାରିବ।

ଟ୍ରାଭେଲୋସିଟି (www.travelocity.com) ୱେବସ୍ଥଳୀର ଉଦାହରଣ ନେଇ ଦେଖିବା। ତାହାର ମୂଳପୃଷ୍ଠା (*ହୋମ ପେଜ୍*)ରୁ ତୁମର ଲକ୍ଷସ୍ଥାନ ଭାବରେ ମରିସସ୍ ବାଛିନିଅ। କିମ୍ବା ସେହି ପୃଷ୍ଠାରେ ଥିବା ପୃଥିବୀ ମାନଚିତ୍ରରୁ ଆଫ୍ରିକା ଅଞ୍ଚଳରେ ମରିସସ୍ ବାଛ। ମରିସସ୍ ବିଷୟରେ ପ୍ରଥମ ପୃଷ୍ଠାରେ ସେହି ଦେଶ ବିଷୟରେ ଅନେକ ତଥ୍ୟ ରହିଥିବ। ମରିସସ୍‌ର କ୍ଷେତ୍ରଫଳ, ଜନସଂଖ୍ୟା, ରାଜଧାନୀ, ଭାଷା ଆଦିର କଥା ସେଠାରେ ଦେଖିବାକୁ ମିଳିବ। ମୂଳପୃଷ୍ଠାରୁ 'ଅଞ୍ଚଳ' ଫର୍ଦ୍ଦ ବାଛିଲେ ପୋର୍ଟ ଲୁଇସ୍, କୁରେପିପି ଓ ରଚେଷ୍ଟର ଫଲ୍ସ୍ ଭଳି ଜାଗାମାନଙ୍କ ବିଷୟରେ ଜାଣିହେବ। ମୂଳପୃଷ୍ଠାକୁ ଫେରିଯାଇ 'ଯାତ୍ରା' ଫର୍ଦ୍ଦ ବାଛିଲେ ଜାଣିହେବ ଯେ କେଉଁ ଉଡ଼ାଜାହାଜ କମ୍ପାନୀ ସେଠାକୁ ଯାଉଛନ୍ତି ଏବଂ ସେଠାରେ କିଭଳି ରେଳ ଓ ରାସ୍ତା ଯୋଗାଯୋଗ ବ୍ୟବସ୍ଥା ରହିଛି। ସେହିଭଳି ଉପଯୁକ୍ତ ସଙ୍କେତ ସବୁ ବାଛିକରି ତୁମେ ମରିସସ୍‌ର ବ୍ୟବସାୟ, ସଂସ୍କୃତି, ସହର ମାନଚିତ୍ର, ପାଣିପାଗ ଆଦି ବିଷୟରେ ଅଧିକ ଜାଣିପାରିବ। ହୋଟେଲରେ ଜାଗା ରଖିବାପାଇଁ 'ସ୍ଥାନ ସଂରକ୍ଷଣ' ସଙ୍କେତରେ ଚାବି ଦବାଇ ଆଗେଇଲେ ସେହି କାମଟି କରିହେବ। ସେହି ଧାରାରେ ଉଡ଼ାଜାହାଜରେ ମଧ୍ୟ ସ୍ଥାନ ଆରକ୍ଷଣ କରିହେବ। ଉଭୟ କ୍ଷେତ୍ରରେ କ୍ରେଡ଼ିଟ୍ କାର୍ଡ ଜରିଆରେ ଟଙ୍କା ଦେଇଦେଲେ ତୁମର ଆରକ୍ଷଣ ନିଶ୍ଚିତ ହୋଇପାରିବ। କିଛିଦିନ ପରେ ପ୍ରକୃତ ଟିକେଟଗୁଡ଼ିକ ଡାକରେ ଆସି ତୁମ ପାଖରେ ପହଞ୍ଚିଯିବ। ଇଣ୍ଟରନେଟ ବ୍ୟବହାର କରି ଏଭଳି ଆମର ସବୁ ପ୍ରସ୍ତୁତି କରିପାରିବାଟା ମଜାଦାର ଓ ସହଜ ବୋଲି ତୁମେ ଭାବୁନାହଁ କି?

ବର୍ତ୍ତମାନ ମୁହୂର୍ତ୍ତକ ପାଇଁ ମନେକର ଯେ ତୁମେ ଏହି ସବୁ ୱେବସ୍ଥଳୀଗୁଡ଼ିକର ନାଁ ଜାଣିନାହଁ। ତେବେ ବି କ'ଣ ତୁମେ ଏସବୁ କାମ କରିପାରିବ? ହଁ, ଏହା କରିବା ସମ୍ଭବ। ଆମ ପାଖରେ ସନ୍ଧାନୀ କଳ ବା *ସର୍ଚ୍ଚ ଇଞ୍ଜିନ* ନାଁରେ ଗୋଟିଏ ବଡ଼ ହତିଆର ରହିଛି। *ୟାହୁ, ଅଲ୍‌ଟାଭିଷ୍ଟା, ୱେବକ୍ରୁଲର* ଆଦି ଏହାର କିଛି

ଟ୍ରାଭେଲୋସିଟି ୱେବସ୍ଥଳୀ – କମ୍ପ୍ୟୁଟରରେ ଭ୍ରମଣ ସହାୟକ।

ଉଦାହରଣ । ଏଗୁଡ଼ିକୁ କାମରେ ଲଗାଇ ତୁମେ ଉପଯୁକ୍ତ ୱେବସ୍ଥଳୀ ଖୋଜି ବାହାର କରିପାରିବ ଏବଂ ତା'ପରେ ଅନ୍ୟ ସବୁ କାମ କରିପାରିବ । ଦେଖିବାକୁ ଗଲେ ଏହି ସନ୍ଧାନୀ କଳଗୁଡ଼ିକ ପ୍ରବେଶଦ୍ୱାର ଭଳି କାମ କରିବେ ଏବଂ ଭ୍ରମଣ ସଂପର୍କିତ ସବୁ ପ୍ରକାରର ସୂଚନା ଯୋଗାଇ ପାରିବେ । ସେଥିରେ ତୁମେ 'ଭ୍ରମଣ' ସଙ୍କେତରେ ଚାବି ଦବାଇ ସବୁ ପ୍ରକାରର ସଂଯୋଗକୁ ଯାଇପାରିବ । ଏହାକୁ ଗୋଟିଏ ଘରପଢ଼ା ଭାବରେ ନେଇ ଅଭ୍ୟାସକରି ଦେଖ ।

ପ୍ରାଇସ୍‌ଲାଇନ (www.priceline.com) ନାମରେ ଗୋଟିଏ ଭଲ ୱେବସ୍ଥଳୀ ଅଛି ଯେଉଁଠାରେ ଟିକେଟ ପାଇଁ ତୁମେ କେତେ ଦେଇପାରିବ ତାହା ଲେଖିପାରିବ । ତାହାର ଉତ୍ତରରେ କେଉଁ ଉଡ଼ାଜାହାଜ କମ୍ପାନୀ ସେହି ଦାମରେ ତୁମକୁ ଟିକେଟ ଦେଇପାରିବେ ସେକଥା ଏହି ୱେବସ୍ଥଳୀ ଖୋଜି ବାହାର କରିଦେବ । ଅର୍ଥାତ, ଏଠାରେ ତୁମେ ଓଲଟା ବାଟରେ କାମଟି କରାଇ ନେଇପାରିବ । ଏଥିରେ କୌଣସି ଜିନିଷର ଲେଖାଥିବା ଦାମରୁ କ୍ରେତାକୁ ବାଛିବାକୁ ପଡ଼େ ନାହିଁ, ବରଂ ବିକ୍ରେତାକୁ ଗରାଖର ଦରକୁ ଆସିବାକୁ ପଡିଥାଏ ।

ଏହିସବୁ ଉଦାହରଣରୁ ତୁମେ ଦେଖିପାରୁଥିବ ଯେ ଇଣ୍ଟରନେଟର ବ୍ୟବହାର କେବଳ ଆମର କଳ୍ପନାଶକ୍ତି ଯୋଗୁ ହିଁ ସୀମିତ । ସାରା ପୃଥିବୀ ଯେବେ ତୁମର କ୍ରେତା ବା ଶ୍ରୋତା ପାଲଟୁଛି ତୁମେ ଯେ କୌଣସି ପଣ୍ୟ ବା ସେବା ଯୋଗାଇ ସେଥିରୁ ପ୍ରଚୁର ଟଙ୍କା ରୋଜଗାର କରିପାରିବ ।

### *ୱେବ କିପରି କାମକରେ?*

ବିଭିନ୍ନ ୱେବସ୍ଥଳୀକୁ ଯିବା ଭିତରେ ୱେବ କେମିତି କାମକରେ ସେ ବିଷୟରେ ତୁମର ବେଶ ଭଲ ଧାରଣା ହୋଇଯିବଣି । ତଥାପି ଏହି ପ୍ରକ୍ରିୟାକୁ ଆହୁରି ଭଲକରି ବୁଝିବା । ଆମେ ଜାଣିଛେ ଯେ ବିଭିନ୍ନ ୱେବପୃଷ୍ଠା ଇଣ୍ଟରନେଟ ସେବକ ଭାବରେ ଜଣାଥିବା କମ୍ପ୍ୟୁଟର ସବୁରେ ରହିଥାଏ । ଇଣ୍ଟରନେଟ ସହିତ ସଂଯୁକ୍ତ ଥିବାବେଳେ ଆମେ ବିଭିନ୍ନ ୱେବସ୍ଥଳୀକୁ ଯିବାପାଇଁ ୱେବ ଖୋଜାଳୀ ବା *ୱେବ ବ୍ରାଉଜର* ନାମକ ଏକ ବିଶେଷ ପ୍ରକାରର କାରିକା ବ୍ୟବହାର କରିଥାଉ । କୌଣସି ନିର୍ଦ୍ଦିଷ୍ଟ ୱେବସ୍ଥଳୀର ଠିକଣା ବା ୟୁଆର୍‌ଏଲ ଯୋଗାଇ ଦେଲେ ୱେବ ଖୋଜାଳୀ ସେହି ସ୍ଥଳୀର ପୃଷ୍ଠାଗୁଡ଼ିକ ଖୋଲିଦିଏ । ବ୍ରାଉଜର ପ୍ରଥମେ ନିର୍ଦ୍ଦିଷ୍ଟ ଇଣ୍ଟରନେଟ ସେବକ ପାଖରେ ପହଞ୍ଚେ ଏବଂ ଆମେ ମାଗିଥିବା ୱେବପୃଷ୍ଠାର ନକଲଟିଏ ଆମ କମ୍ପ୍ୟୁଟରକୁ ପଠାଇବାପାଇଁ ସେବକକୁ କହିଥାଏ । ସାଧାରଣତଃ ଆମେ ୱେବସ୍ଥଳୀର ଠିକଣା ଲେଖିଲେ ସେହି ସ୍ଥଳୀର ମୂଳପୃଷ୍ଠା ବା *ହୋମ ପେଜ୍*ଟି ଖୋଲିଥାଏ । କିନ୍ତୁ ଆମେ ଯଦି କିଛି ନିର୍ଦ୍ଦିଷ୍ଟ ପୃଷ୍ଠାର ଠିକଣା ଯୋଗାଇଦେବା ତେବେ ସେହି ପୃଷ୍ଠା ହିଁ ସିଧା ସଳଖ ଖୋଲିବ । ତାପରେ ଆମେ କୌଣସି ସଂଯୋଗରେ ଚାବି ଦବାଇଲେ ବ୍ରାଉଜର ସେହି ସଂଯୋଗର ଠିକଣା ଧରିନିଏ ଏବଂ ତାହାର ଲକ୍ଷ ପୃଷ୍ଠାକୁ ଆଣିଦିଏ ।

### *ବ୍ରାଉଜର କ'ଣ?*

ୱେବ ଖୋଜାଳୀ ବା ବ୍ରାଉଜର ହେଉଛି ଏକ ବିଶେଷ ପ୍ରକାରର କାରିକା ବା *ସଫ୍‌ଟୱେର* ଯାହା ଇଣ୍ଟରନେଟରେ ସୂଚନା ଖୋଜିବା, ଦେଖିବା, ବାହାର କରିଆଣିବା ଏବଂ ପଠାଇବାରେ ଆମକୁ ସାହାଯ୍ୟ କରିଥାଏ । ଏହା ସହିତ ମିଶି ରହିଥିବା ଅନ୍ୟ କିଛି କାରିକା ଆମକୁ ତଳର କାମ ସବୁରେ ସାହାଯ୍ୟ କରେ ।

* ପୃଥିବୀର ଯେକୌଣସି ଜାଗାକୁ ସାଙ୍ଗେ ସାଙ୍ଗେ ଇ-ଡାକ ବା ଇ-ଖବର ପଠାଇବାରେ ଏବଂ ପାଇବାରେ ।
* ନିଉଜଗ୍ରୁପ (ସମ୍ବାଦ ମଞ୍ଚ) ଓ ଫୋରମରୁ ଖବର ପଢ଼ିବାରେ ଓ ତାଙ୍କ ଜରିଆରେ ସୂଚନା ଓ ମତ ବିନିମୟ କରିବାରେ ।

* ବିଶ୍ୱବ୍ୟାପୀ ୱେବରେ, ଯେଉଁଠାରେ ତୁମେ ବହୁ ପ୍ରକାରର ଲେଖା, ଚିତ୍ର ଓ ସହଭାଗୀ ତଥ୍ୟ ପାଇପାରିବ, କିଛି ଖୋଜିବା କାମରେ ବା ବ୍ରାଉଜ କରିବାରେ।

ଅନେକଗୁଡ଼ିଏ ବ୍ରାଉଜର ସଫ୍ଟୱେର ଥିଲେ ବି ସେଥିରୁ ଦୁଇଟି ବେଶୀ କାମରେ ଲାଗନ୍ତି। ସେ ଦୁଇଟି ହେଉଛି *ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର* ଓ *ନେଟସ୍କେପ ନେଭିଗେଟର*। ଏହି ଦୁଇଟି ହେଉଛନ୍ତି ସର୍ବାଧୁନିକ କୌଶଳଯୁକ୍ତ ଖୋଜାଳୀ ଏବଂ ଦୁଇଟିର ଭିତରେ ପ୍ରତିଯୋଗୀତା ମଧ୍ୟ ଅତି ତୀବ୍ର। ଉଭୟେ ନିୟମିତ ଭାବରେ ଆଗେଇ ଚାଲିଛନ୍ତି ଏବଂ ତାଙ୍କର ନୂଆ ସଂସ୍କରଣଗୁଡ଼ିକୁ ନିଜ ନିଜର ୱେବସ୍ଥଳୀରେ ମାଗଣାରେ ଯୋଗାଇ ଦେଉଛନ୍ତି। ଏହି ୱେବସ୍ଥଳୀ ଦୁଇଟି ହୋଉଛି –

www.home.netscape.com/download

www.microsoft.com/ie

ସବୁ ୱିଣ୍ଡୋ–ଆଧାରିତ କାରିକା ଭଳି କାମକୁ ନିୟନ୍ତ୍ରଣ କରିବାପାଇଁ ବ୍ରାଉଜର ଦେହରେ ବୋତାମ, ତାଲିକା (*ମେନୁ*), ଘୁଆଇବା ଚାବି (*ସ୍କ୍ରୋଲ୍‌ବାର*) ଆଦି ଅନେକ ବିଶେଷ ଜିନିଷ ରହିଛି। ସବୁ ବ୍ରାଉଜର ଏକାଭଳି କାମ କରୁଥିଲେ ବି ତାଙ୍କର ପୃଷ୍ଠା ପ୍ରଦର୍ଶନରେ ବା ବୋତାମ ଆଦିର ନାମକରଣରେ କିଛି ତଫାତ ରହିଥାଇପାରେ।




*ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର ୱିଣ୍ଡୋ*

# ତୃତୀୟ ଅଧ୍ୟାୟ

# ଇଲେକ୍‌ଟ୍ରନିକ ଡାକ

ଇଲେକ୍‌ଟ୍ରନିକ ଡାକ (*ଇ-ମେଲ* ବା ଇ-ଡାକ) ଓ ତାହାର ଉପାଦେୟତା ବିଷୟରେ ଆମର କିଛି ମୌଳିକ ଧାରଣା ହୋଇସାରିଛି। ଏହି ଉପଯୋଗୀ ସେବା ବିଷୟରେ କିଛି ଅଧିକ କଥା ଏଠାରେ ଦେଖିବା।

ବନ୍ଧୁବାନ୍ଧବ, ସାଥି, ସହକର୍ମୀ ଓ ଅନ୍ୟ ସବୁପ୍ରକାରର ଲୋକଙ୍କ ସହିତ ଯୋଗାଯୋଗ ରଖିବା ପାଇଁ ଆମେ ସାଧାରଣତଃ ଇ-ଡାକ ବ୍ୟବହାର କରିଥାଉ। ଏବେ ସାଧାରଣ ଲେଖା ବାଦେ ସବୁ ପ୍ରକାରର ଦଲିଲ (ଯେପରି ଆମର ପ୍ରକଳ୍ପ ବିବରଣୀ ଥିବା ଗୋଟିଏ *ୱର୍ଡ ଡକୁମେଣ୍ଟ* ଫାଇଲ), ସାଙ୍ଗର ଫଟୋ ଭଳି ଛବି ଫାଇଲ, ଏପରିକି ନିଜ ଗୀତର ଧ୍ୱନି ଫାଇଲ ମଧ୍ୟ ଇ-ଡାକରେ ପଠାଇ ହେଉଛି। ତୁମେ ଗୋଟିଏ ୱେବସ୍ଥଳୀକୁ ଯାଇ ସେଥିରୁ ଗୋଟିଏ ପୃଷ୍ଠା ମଧ୍ୟ ତୁମ ଇ-ଡାକର ଅଂଶ ଭାବରେ ପଠାଇ ପାରିବ।

ଇ-ଡାକ ପଠାଇବା ପାଇଁ ତୁମକୁ ତୁମ ସାଙ୍ଗର ଇ-ଡାକ ଠିକଣା ଜାଣିବାକୁ ହେବ। ଇ-ଡାକ ଠିକଣାଗୁଡ଼ିକ ସାଧାରଣତଃ ତଳଭଳି ହୋଇଥାଏ।

laxman@hotmail.com

ଲକ୍ଷ୍ମଣ ହେଉଛି ତୁମ ସାଙ୍ଗର ନାମ (ବ୍ୟବହାରକାରୀ ନାମ) ଏବଂ ହଟମେଲ୍-ଡଟ୍-କମ୍ ହେଉଛି ପରିସର ନାମ। ଏହାର ଅର୍ଥ ତୁମ ସାଙ୍ଗ ଲକ୍ଷ୍ମଣଙ୍କର ଗୋଟିଏ ଡାକ ବାକ୍ସ 'ହଟମେଲ୍-ଡଟ୍-କମ୍' ସେବକରେ ରହିଛି। ଡାକ ପାଇବା ପାଇଁ ତୁମକୁ ମଧ୍ୟ ତୁମର ଏକ ଇ-ଡାକ ଠିକଣା ଓ ଡାକ ବାକ୍ସଟିଏ ରଖିବାକୁ ହେବ। ତୁମର ଇଣ୍ଟରନେଟ ସେବା ଯୋଗାଣକାରୀ (*ଆଇଏସ୍‌ପି*) ତୁମକୁ ଏହି ସବୁ ଯୋଗାଇ ଦେବ।

ଯଦି ତୁମର ଇଣ୍ଟରନେଟ ସଂଯୋଗ ନାହିଁ ତଥାପି ତୁମେ ଏକ ଇ-ଡାକ ଠିକଣା ଓ ଡାକ ବାକ୍ସର ମାଲିକ ହୋଇପାରିବ। ଇଣ୍ଟରନେଟରେ ଅନେକ ୱେବସ୍ଥଳୀ ରହିଛି ଯିଏ ଏହିଭଳି ସେବା ବିନା ମୂଲ୍ୟରେ ଯୋଗାଇଥା'ନ୍ତି। ବାସ୍ତବରେ ଏଭଳି ମାଗଣା ଇ-ଡାକର ବାଟ ଖୋଲିବାରେ ପ୍ରଥମ ଥିଲା ହଟମେଲ୍ (www.hotmail.com)। ସବୀର ଭାଟିଆ ନାମକ ଜଣେ ଭାରତୀୟ ଏହାର ପରିକଳ୍ପନା କରିଥିବା କଥା ତୁମେ ଜାଣିଛ କି? ମାଇକ୍ରୋସଫ୍ଟ କମ୍ପାନୀ (ପୃଥିବୀର ସବୁଠାରୁ ବଡ଼ କମ୍ପାନୀ)କୁ ଏହି ୱେବସ୍ଥଳୀଟି ବିକିଦେଇ ସେ କୋଟିପତି ହୋଇପାରିଥିଲେ। ମଜାର କଥା ଯେ ଅନେକ ଭାରତୀୟ ଆମେରିକାରେ ଇଣ୍ଟରନେଟ କମ୍ପାନୀ ଗଢ଼ି କୋଟିପତି ବନିଯାଉଛନ୍ତି। ହଟମେଲ୍ ଭଳି ମାଗଣା ଇ-ଡାକ ସୁବିଧା ଯୋଗାଉଥିବା ଆଉକିଛି ୱେବସ୍ଥଳୀ ହେଲେ -

www.yahoo.com,

www.mailcity.com,

www.excite.com,

www.eudoramail.com
www.indiatimes.com
www.rediff.com
www.kabutarmail.com
www.tajamail.com
www.epatra.com (ଏଥିରେ ଓଡ଼ିଆ ଓ ଅନ୍ୟ ଭାରତୀୟ ଭାଷାରେ ଚିଠି ପଠାଇହେବ)।

ଇ-ଡାକ ଯୋଗାଣକାରୀ ହଟମେଲ୍ ୱେବସ୍ଥଳୀ।

ଲକ୍ଷକରିବା କଥା ଯେ ମାଗଣା ଇ-ଡାକ ବ୍ୟବସ୍ଥାଗୁଡ଼ିକ ସବୁ ୱେବ ଆଧାରିତ। ତେଣୁ ହଟମେଲ୍ ଭଳି ଏହି ମାଗଣା ଡାକ ବ୍ୟବସ୍ଥାର ବ୍ୟବହାର ପାଇଁ ଯାହା କିଛି ଦରକାର ସେସବୁ ତୁମ କମ୍ପ୍ୟୁଟରରେ ନରହି ଇଣ୍ଟରନେଟରେ ରହିଛି। ତେଣୁ ଇଣ୍ଟରନେଟ ସୁବିଧା ଥିବା ଯେ କୌଣସି କମ୍ପ୍ୟୁଟରରେ ତୁମେ ହଟମେଲ୍ ବ୍ୟବହାର କରିପାରିବ। ଯଦି ତୁମେ କେଉଁଆଡ଼େ ବୁଲିଯାଉଛ, ଘର ବଦଳାଉଛ ବା ତୁମ ଇଣ୍ଟରନେଟ ସେବା ଯୋଗାଣକାରୀ ବଦଳାଉଛ, ତେବେ ବି ତୁମର ହଟମେଲ୍ ଇ-ଡାକ ଠିକଣା ଓ ସେବା ଅପରିବର୍ତ୍ତିତ ରହିବ।

ମାଗଣା ଇ-ଡାକ ସେବା ପାଇବାପାଇଁ ତୁମକୁ କେବଳ ସେହି ୱେବସ୍ଥଳୀକୁ ଯିବାକୁ ହେବ ଏବଂ ଜଣେ ନୂଆ ବ୍ୟବହାରକାରୀ ଭାବରେ ପଞ୍ଜିକରଣ କରିବାକୁ ପଡ଼ିବ। ଏହା ଫଳରେ ତୁମର ବ୍ୟବହାରକାରୀ ନାମ (*ୟୁଜର ନେମ୍*) ଓ ପ୍ରବେଶ ସଙ୍କେତ (*ପାସ୍‌ୱର୍ଡ*) ସ୍ଥିର ହୋଇ ରହିବ। ଏତିକି କରିବା ପରେ ତୁମେ ସେହି ୱେବସ୍ଥଳୀକୁ ଯାଇ ତୁମର ବ୍ୟବହାରକାରୀ ନାମ ଓ ପ୍ରବେଶ ସଙ୍କେତ ବ୍ୟବହାର କରି ଡାକ ବାକ୍ସ ଖୋଲିପାରିବ ଏବଂ ଡାକ ପଢ଼ିପାରିବ ବା ପଠାଇପାରିବ। ସତରେ ଏହା ସହଜ ନୁହେଁ କି? ତୁମେ କାହିଁକି ଆଜି ହିଁ ଚେଷ୍ଟା ନକରିବ?

### *ଇ-ଡାକ କାରିକା (ଇ-ମେଲ୍ ସଫ୍‌ଟୱେର)*

ଇ-ଡାକ ପଠାଇବା ଓ ପାଇବା କାମ କିଛି ସ୍ୱତନ୍ତ୍ର ଡାକ କାରିକା (*ମେଲ୍ ସଫ୍‌ଟୱେର ବା ମେଲର*)

ସାହାଯ୍ୟରେ କରାଯାଇଥାଏ। ହଟମେଲ୍ ଭଳି ମାଗଣା ଡାକ ବ୍ୟବସ୍ଥା ଭିତରେ ଏହି ସବୁ ଡାକ କାରିକା ଖଞ୍ଜିହୋଇ ରହିଥାଏ। କିନ୍ତୁ ତୁମର ଆଇଏସ୍‌ପି ଦେଇଥିବା ଇ-ଡାକ ଠିକଣାକୁ ବ୍ୟବହାର କରିବା ପାଇଁ ତଳର ଇ-ଡାକ କାରିକା ଭିତରୁ କାହାର ସାହାଯ୍ୟ ନେବାକୁ ହେବ।

- ନେଟସ୍କେପ ମେସେଞ୍ଜର
- ଲିନସ୍କ ସେଣ୍ଡ ମେଲ
- ଇଉଡୋରା ପ୍ରୋ
- କମ୍ପ୍ୟୁସର୍ଭ
- ନେଟକ୍ରୁଇଜର
- ପେଗାସସ୍ ମେଲ
- ଏମ୍.ଏସ୍. ଆଉଟଲୁକ୍ ୯୮/୨୦୦୦

ସବୁ ଡାକ କାରିକାରେ ଡାକ ପଠାଇବା ଓ ପାଇବା କାମ ପ୍ରାୟ ଏକା ଭଳି ନିର୍ଦ୍ଦେଶରେ ହୋଇଥାଏ। କିନ୍ତୁ ଡାକ ସଂପାଦନା, ରଚନା ଓ ପରିଚାଳନା ଦୃଷ୍ଟିରୁ ପ୍ରତ୍ୟେକର ଦକ୍ଷତା ଅଲଗା ହୁଏ। ଇ-ଡାକ କାରିକାରେ ଆମେ କେଉଁ ସବୁ କାମ କରିପାରିବା ତାହା ଏଠାରେ ଦେଖିବା।

### *ଡାକ କାରିକା ଚଳାଇବା*

ଧରାଯାଉ ତୁମର କମ୍ପ୍ୟୁଟରଟିଏ ଅଛି ଓ ସେଥିରେ ୱିଣ୍ଡୋଜ୍-୯୮ ଏବଂ ଇଣ୍ଟରନେଟ ଠିକ ଭାବରେ ସ୍ଥାପିତ ହୋଇଛି। ତାହା ସହିତ ଉପରେ ଆମେ ଆଲୋଚନା କରିଥିବା କୌଣସି ଇ-ଡାକ କାରିକା ମଧ୍ୟ ଠିକ ଭାବରେ ଚାଲୁଛି। ସେହି କ୍ଷେତ୍ରରେ ତୁମର *ଡେସ୍କଟପ*ରେ ଥିବା ଇ-ଡାକ କାରିକାର ଚିତ୍ରସଙ୍କେତ ଉପରେ ଦୁଇଥର ମାଉସ୍ ବୋତାମ ଚିପିକରି ତୁମେ ତାହାକୁ ଚଳାଇ ପାରିବ। ଖୋଲିବା ବେଳକୁ ଏହା ହୁଏତ ଆସିଥିବା-ଡାକ ବାକ୍ସ (*ଇନ-ମେଲ ବକ୍ସ*)ରେ ଥିବା ଚିଠିର ତାଲିକା ଦେଖାଇବ କିମ୍ବା ବିଭିନ୍ନ ଡାକ ବାକ୍ସର ଗୋଟିଏ ତାଲିକା ଦେଖାଇବ। ଦ୍ୱିତୀୟ କ୍ଷେତ୍ରରେ ତୁମକୁ ସେହି ତାଲିକାରୁ ଆସିଥିବା ଡାକ ବାକ୍ସକୁ ବାଛି ଖୋଲିବାକୁ ହେବ। ଆସିଥିବା-ଡାକ ବାକ୍ସ ଛଡ଼ା ଆଉ ଗୋଟିଏ ଯାଇଥିବା-ଡାକ ବାକ୍ସ (*ଆଉଟ୍-ମେଲ୍‌ବକ୍ସ*) ମଧ୍ୟ ନିଶ୍ଚିତ ଭାବରେ ରହିଥିବ। ସେଥିରେ ତୁମେ ପଠାଉଥିବା ଚିଠିଗୁଡ଼ିକର ନକଲ ରଖାଯାଇପାରେ।

### *ଡାକ ପଢ଼ିବା*

ଡାକ ବାକ୍ସରେ ପ୍ରତି ଚିଠି ପାଇଁ ପ୍ରେରକର ନାମ, ଚିଠିର ବିଷୟ ଓ ତାରିଖର ତାଲିକା ଦେଖାଯାଏ। କୌଣସି ଚିଠି ଉପରେ ଦୁଇଥର ମାଉସ୍ କ୍ଲିକ୍ କଲେ ସେହି ଚିଠିଟି ଗୋଟିଏ ଝରକାରେ ଖୋଲି ଦେଖାଯିବ। ଅପଢ଼ା ଡାକଗୁଡ଼ିକରେ କିଛି ବିଶେଷ ଚିହ୍ନ ରହିଥାଏ ଯେପରି ତାହା ନୂଆ ବୋଲି ଜଣାପଡ଼ିବ। ଏହା ଫଳରେ କୌଣସି ଚିଠି ଭୁଲରେ ଅପଢ଼ା ରହିଯିବାର ଡର ନଥାଏ। ତାଲିକାରୁ କୌଣସି ଚିଠିର ଭିତର ଲେଖା ଦେଖିବାକୁ ହେଲେ ତାହାକୁ ବାଛିକରି (*ହାଇଲାଇଟ୍* କରି) ପ୍ରବେଶ (*ଏଣ୍ଟର*) ଚାବି ଚିପିବାକୁ ହୁଏ କିମ୍ବା ତାହା ଉପରେ ଦୁଇଥର ବୋତାମ ଦବାଇବାକୁ ହୁଏ। ଏପରି କଲେ ଖବରଟି ତା ନିଜର ୱିଣ୍ଡୋରେ ଦେଖାଯିବ। ଗୋଟିଏ ଥରରେ ପୂରା ଲେଖାଟି ଦେଖାଯାଉନଥିଲେ ଘୁଞ୍ଚାଇବା ଚାବି (*ସ୍କ୍ରୋଲ୍‌ବାର*) ବ୍ୟବହାର କରିପାରିବ।

ଚିଠି ପଢ଼ିବା ବେଳେ ତୁମେ ପୂର୍ବ (*ପ୍ରିଭିଅସ୍*) ବା ପର (*ନେକ୍ସଟ*) ଚାବି ବ୍ୟବହାର କରି ଆଗ ବା ପଛ ଚିଠିକୁ ଯାଇପାରିବ। ଡାକଟିକୁ କାଟିଦେଇହେବ କିମ୍ବା ସେହି କାରିକାରୁ ଛପାଯାଇପାରିବ। *ମୁଭ୍* ବୋତାମ୍ ବ୍ୟବହାର କରି ଏହି ଡାକକୁ ଅନ୍ୟ *ଫୋଲ୍‌ଡର*କୁ ନେଇହେବ। ଆସୁଥିବା ଡାକରେ କିଛି ସୂଚକ ଥାଇପାରେ

Address m/cgi-bin/HoTMaiL?curmbox=F000000001&a=074592de27e1e118e6aebd0917d6eb26&fti=yes&_lan

MSN India | Hotmail | Search | News | Weather | Entertainment | Passport sign out

msn

Hotmail srujanika@hotmail.com

Inbox | Compose | Address Book | Folders | Options | Messenger | Ca

Cool Tools
Photo Albums
FindMessage
Reminders

Services
POP Mail
Hotmail News
Directories
Languages

India Links
News
Cricket
Weather
Entertainment

Inbox 2 new (Avoid junk e-mail, activate Inbox Protector.)

Delete | Block Sender(s) | Move to | -Move to Selecte

| | | From | Subject | |
|---|---|---|---|---|
| | | RAJESH AIYAR | Re: Microtek SlimScan C6 parallel port flatbe... | Oct 1 |
| | | Hotmail Member Servi... | Holiday Specials for Hotmail Members | Dec |
| | | rabindrananda@usa.ne... | HAPPY NEW YEAR | Jan 2 |
| | ▸▸ | Hotmail Member Servi... | What's New from Hotmail and MSN in the New Ye... | Jan 1 |
| | ▸▸ | Hotmail Member Servi... | Sharing photos on MSN Photo Album - it's easy... | Feb 1 |

ହଟମେଲ୍ ଆସିଥିବା-ଡାକ ବାକ୍ସ (ଇନ୍ ବକ୍ସ)।

ଯାହା ଜଣାଏ ଯେ ଚିଠି ସହିତ କିଛି ଟୀକା ରହିଛି ବା ଏହି ଖବର ପାଇଁ ଉତ୍ତର ପଠାସରିଛି କିମ୍ବା ଖବରଟି କେତୋଟି ଭାଗରେ ଆସିଛି ବା କିଛି ସଂଲଗ୍ନ *(ଆଟାଚମେଣ୍ଟ)* ସହିତ ଆସିଛି।

## *ଡାକର ଉତ୍ତର ଦେବା*

ତୁମେ ବେଶ୍ ସହଜରେ 'ଉତ୍ତର ଦିଅ' *(ରିପ୍ଲାଇ)* ନିର୍ଦ୍ଦେଶକୁ ଠାବ କରିପାରିବ। ଏହି ନିର୍ଦ୍ଦେଶକୁ ଚଳାଇ କରି ଉତ୍ତର ଦେବା କାମର ଆରମ୍ଭ କର। ପ୍ରଥମେ ଗୋଟିଏ ଡାକ ନିବେଶ ପରଦା *(ମେଲ ଇନ୍‌ପୁଟ ସ୍କ୍ରିନ୍)* ଦେଖାଯିବ ଯେଉଁଥିରେ ପ୍ରେରକର ଠିକଣା ଲେଖା ହୋଇଥିବ। ବିଷୟବସ୍ତୁ ଟାଇପକରି *ଟ୍ୟାବ୍* ଚାବି ଚିପ, ଦରକାର ଥିଲେ ଅନ୍ୟ ପ୍ରାପକଙ୍କ ଠିକଣା ଲେଖ, ପୁଣି ଥରେ *ଟ୍ୟାବ୍* ଚାବି ଚିପି ଚିଠି ଲେଖିବା ଜାଗାକୁ ଆସ ଏବଂ ଚିଠିଟି ଲେଖ। ଶେଷରେ 'ପଠାଅ' ବା *ସେଣ୍ଡ* ନିର୍ଦ୍ଦେଶ ବାଛି ଡାକକୁ ପଠାଇଦିଅ। ଚିଠିର ଉତ୍ତରରେ ମୂଳ ସନ୍ଦେଶଟି ମଧ୍ୟ ରଖାଯାଇପାରେ। ଏହାକୁ ଉଦ୍ଧୃତ କରିବା *(କୋଟିଙ୍ଗ)* କୁହାଯାଏ।

ଏହି ବିଷୟରେ ଆଉ ଆଗେଇବା ପୂର୍ବରୁ ତଳର ବାକ୍ସ ଲେଖାକୁ ଥରେ ଦେଖିନିଅ। ଗୋଟିଏ ଇ-ଡାକ ପରଦାର ବିଭିନ୍ନ ଅଂଶକୁ ତାହା ସାହାଯ୍ୟରେ ବୁଝିହେବ।

## *ନୂଆ ଡାକ ପଠାଇବା*

ଡାକ କାରିକାର ସନ୍ଦେଶ ତାଲିକାରେ 'ନୂଆ ସନ୍ଦେଶ' *(ନିଉ ମେସେଜ)* ନିର୍ଦ୍ଦେଶ ରହିଛି ଏବଂ ତା'ର ଗୋଟିଏ ସଂକ୍ଷିପ୍ତ ବାଟ (କଣ୍ଟ୍ରୋଲ+N) ମଧ୍ୟ ରହିଛି। ନୂଆ ସନ୍ଦେଶ ବୋତାମକୁ ଚିପିଲେ ଗୋଟିଏ ନୂଆ

### ଇ-ଡାକ ସଂଦେଶର ବିଭିନ୍ନ ଅଂଶ

ଇ-ଡାକ କାରିକା ପାରମ୍ପରିକ କାଗଜ ଡାକ ଭଳି ବିଭିନ୍ନ ସୁବିଧା ଯୋଗାଇଥାଏ। ଏଠାରେ ଆମେ ଇ-ଡାକ ସନ୍ଦେଶର ବିଭିନ୍ନ ଅଂଶ ବିଷୟରେ ଅଧିକ ଆଲୋଚନା କରିବା।

ପ୍ରାପକ (ଟୁ): ଏଠାରେ ଯାହା ପାଖକୁ ଚିଠି ଯାଉଛି ତାଙ୍କର ଇ-ଡାକ ଠିକଣା ଲେଖାଯାଇଥାଏ। ଏକାଧିକ ଠିକଣା ଥିଲେ କମା ଦେଇ ବା ଫାଙ୍କା ଜାଗା ଛାଡ଼ି ସେଗୁଡ଼ିକୁ ଅଲଗା କରାଯାଏ।

ପ୍ରେରକ (*ଫ୍ରମ୍*): ଏହି ଜାଗାରେ ପ୍ରେରକର ଠିକଣା ଆପଣା ଛାଏଁ ଲେଖିହୋଇଯାଏ। ଅନେକ ଡାକ କାରିକାରେ ଏଥିପାଇଁ ଜାଗା ନଥାଇପାରେ।

**ବିଷୟବସ୍ତୁ** (*ସବ୍‌ଜେକ୍ଟ*): ଚିଠିଟି କେଉଁ ବିଷୟରେ ଲେଖାଯାଇଛି ତାହାର **ସଂକ୍ଷିପ୍ତ ଶୀର୍ଷକଟିଏ** ଏଠାରେ ଲେଖାଯାଏ। ଏହି **ଶୀର୍ଷକଟି ସ୍ପଷ୍ଟ** ଓ ସୂଚନାମୂଳକ ହୋଇଥିବା ଦରକାର।

**ନକଲ ପ୍ରାପକ** (*ସିସି – କାର୍ବନ କପି*): ଏହା ଆମକୁ ଏକ ସମୟରେ ଅନେକ ଲୋକଙ୍କ ପାଖକୁ ସମାନ ଚିଠି ପଠାଇବାରେ ସାହାଯ୍ୟ କରିଥାଏ। ଚିଠିର ନକଲ ରଖିବା ପାଇଁ ଜଣେ ନିଜର ଇ-ଡାକ ଠିକଣା ମଧ୍ୟ ଦେଇପାରେ। ଅବଶ୍ୟ କିଛି ଡାକ କାରିକା ବାହାରକୁ ଯାଉଥିବା ଚିଠିର ନକଲ ଏକ ନିର୍ଦ୍ଦିଷ୍ଟ ଫୋଲ୍‌ଡରରେ ଆପଣା ଛାଏଁ ରଖିଥାନ୍ତି।

**ଅଜଣା ନକଲ** (*ବିସିସି – ବ୍ଲାଇଣ୍ଡ କାର୍ବନ କପି*): କେତୋଟି ଡାକ କାରିକାରେ ଏହି ବିଶେଷ କଥାଟି ରହିଥାଏ। ଏହା ସାହାଯ୍ୟରେ ଏକ ସମୟରେ ଗୋଟିଏ ଚିଠିର ନକଲ ବିଭିନ୍ନ ଲୋକଙ୍କ ପାଖକୁ ପଠାଯାଇପାରିବ, କିନ୍ତୁ କେହି ଜାଣିପାରିବେ ନାହିଁ ଯେ ଅନ୍ୟମାନେ ମଧ୍ୟ ସେହି ସନ୍ଦେଶ ପାଇଛନ୍ତି।

ଚିଠିର ଦେହ (*ବଡି ଅଫ୍ ଦି ମେସେଜ୍*): ଏଥିରେ ତୁମର ସନ୍ଦେଶ ରହିଥାଏ।

*ଅନ୍ୟାନ୍ୟ ସୂଚକ ବାକ୍ସ (ଚେକ୍ ବକ୍ସ) ବା ସୁବିଧା ଯେଉଁଥିରେ ଚିହ୍ନଦେବା ବା ଧ୍ୟାନଦେବା ଦରକାର:*

ନିଜ ପାଖକୁ ନକଲ (*କପି ଟୁ ସେଲ୍‌ଫ*): ଭବିଷ୍ୟତ ବ୍ୟବହାର ପାଇଁ ତୁମ ଚିଠିର ନକଲ ଚାହୁଁଥିଲେ ଏହି ସୁବିଧାକୁ ବାଛ।

ପଢ଼ାଯିବାର ସୂଚନା (*କନ୍‌ଫର୍ମ ରିଡିଙ୍ଗ୍*): ପ୍ରାପକ ତୁମର ଚିଠି ପଢ଼ିଥିବାର ସୂଚନା ତୁମେ ପାଇବାକୁ ଚାହିଁଲେ ଏହି ବିକଳ୍ପରେ ଚିହ୍ନଦିଅ।

ପ୍ରାପ୍ତି ନିଶ୍ଚିତ କରିବା (*କନ୍‌ଫର୍ମ ଡେଲିଭରି*): ପ୍ରାପକ ତୁମର ଚିଠି ପାଇଥିବା ବିଷୟରେ ନିଶ୍ଚିତ ହେବାପାଇଁ ଏହି ବିକଳ୍ପକୁ ବାଛ।

ଜରୁରୀ (*ଅର୍‌ଜେଣ୍ଟ*): ଜରୁରୀ ବାକ୍ସରେ ଚିହ୍ନ ଦେଲେ ସଞ୍ଚାର ବ୍ୟବସ୍ଥାରେ ତୁମର ଚିଠିଟି ଅଗ୍ରାଧିକାର ପାଇବ ଏବଂ ଆଗ ପଠାଯିବ।

ଗୁପ୍ତ ସଙ୍କେତନ (*ଏନକ୍ରିପ୍‌ସନ୍*): ସମ୍ବେଦନଶୀଳ ବା ଘରୋଇ ସନ୍ଦେଶକୁ ଅନ୍ୟ କେହି ପଢ଼ିନପାରିବା ପାଇଁ ତାହାକୁ ସାଙ୍କେତିକ ରୂପରେ ପଠାଯାଇପାରେ। ପାଉଥିବା ଲୋକ ଏକ ପ୍ରବେଶ ସଙ୍କେତ ସାହାଯ୍ୟରେ ତାହାକୁ ସାଧାରଣ ଭାଷାକୁ ଫେରାଇଆଣିପାରେ।

ଉନ୍ନତ ଲେଖ (*ରିଚ୍ ଟେକ୍ସଟ୍*): ତୁମ ସନ୍ଦେଶରେ ବଡ଼ ବା ଗାଢ଼ କିମ୍ବା ଢଳିକରି ରହିଥିବା ଅକ୍ଷର ଭଳି ଲେଖାର ବିଶେଷ ରୂପଗୁଡ଼ିକ ଉନ୍ନତ ଲେଖରେ ଠିକ ଭାବରେ ରହିଥାଏ। ସବୁ ଡାକ କାରିକାରେ ଏହି ସୁବିଧା ମିଳେନାହିଁ।

ସନ୍ଦେଶ ଝରକା ବାହାରିଥାଏ। ସେହି ଝରକାରେ ଦେଖାଯାଉଥିବା ବିଭିନ୍ନ ବାକ୍ସକୁ ତଳ ଧାରାରେ ଭରିଦିଅ।

ପ୍ରାପକ (*ଟୁ:*) ବାକ୍ସରେ ଚିଠି ପାଇବାକୁଥିବା ଲୋକର ଠିକଣା ଲେଖ। ଆମେ ଦେଖିଛେ ଯେ ଚିଠିକୁ ଠିକ ଜାଗାରେ ପହଞ୍ଚାଇବା ପାଇଁ ଏହି ଠିକଣାରେ ସବୁ ଦରକାରୀ ସୂଚନା ରହିଥାଏ। ଗୋଟିଏ ବାକ୍ସରୁ ଅନ୍ୟ ବାକ୍ସକୁ ଯିବାପାଇଁ *ଟ୍ୟାବ୍* ଦବାଅ। ଆଉ କାହା ପାଖକୁ ଇ-ଡାକର ନକଲ ପଠାଇବାର ଥିଲେ ପୁଣିଥରେ *ଟ୍ୟାବ୍* ଦବାଅ ଏବଂ ସେମାନଙ୍କର ଠିକଣା ନକଲ ପ୍ରାପକ (*ସିସି:*) ବାକ୍ସରେ ଲେଖ। ଆହୁରି କିଛି ଥର *ଟ୍ୟାବ୍* ଦବାଇ ଦର୍ଶିକାକୁ ସନ୍ଦେଶ କ୍ଷେତ୍ରକୁ ଆଣ। ସନ୍ଦେଶ ଲେଖିବା କାରିକାରେ ଧାଡ଼ି ଭାଙ୍ଗିବା ଏବଂ ସାଧାରଣ ଅକ୍ଷର ସଜ୍ଜା ଭଳି କିଛି ବ୍ୟବସ୍ଥା ଆଗରୁ ରହିଥାଏ। ଚିଠିଲେଖା ସରିଗଲେ 'ପଠାଅ' ବୋତାମ ଦବାଇ ଚିଠିକୁ ସାଙ୍ଗେ ସାଙ୍ଗେ ପଠାଇଦିଅ କିମ୍ବା ଏକା ସାଙ୍ଗରେ ପଠାଯିବାପାଇଁ ଥିବା ଚିଠିର ଧାଡ଼ିରେ ତାହାକୁ ଯୋଡ଼ିଦିଅ।

**ସହାୟକ ସୂଚନା:** ଶବ୍ଦ ସଂଯୋଜକ (*ୱାର୍ଡ ପ୍ରସେସର*) ଜରିଆରେ ମଧ୍ୟ ସନ୍ଦେଶ ଲେଖାଯାଇପାରିବ। ନକଲ (*କପି*) ଓ ଯୋଡ଼ (*ପେଷ୍ଟ*) କୌଶଳ ବ୍ୟବହାର କରି ଶବ୍ଦ ସଂଯୋଜକରୁ ଲେଖାକୁ ଆଣି ନୂଆ ସନ୍ଦେଶ ବାକ୍ସରେ ରଖାଯାଇପାରିବ। କିନ୍ତୁ ଏହି ଧାରାରେ ବେଳେ ବେଳେ କିଛି ବିଶେଷ ଅକ୍ଷର ସନ୍ଦେଶକୁ ଆସେନାହିଁ। ତେଣୁ ଚିଠି ପଠାଇବା ଆଗରୁ ଏଥିପ୍ରତି ଧ୍ୟାନ ଦେବା ଦରକାର।

**ଟୀକା:** ବଡ଼ ଅକ୍ଷରରେ ଲେଖା ଯାଇଥିବା ଚିଠି ପଢ଼ିବାକୁ ଭଲଲାଗେ ନାହିଁ। ଏଭଳି ଲେଖାକୁ ବଡ଼ପାଟି କରିବା କୁହାଯାଏ। ତେଣୁ ଉଭୟ ଛୋଟ ଓ ବଡ଼ ଅକ୍ଷର ମିଶାଇକରି ଚିଠି ଲେଖିବା ଉଚିତ।

## *ଇ-ଡାକରେ କିଛି ବିଶେଷ ସୁବିଧା*

**ଏକାଧିକ ପ୍ରାପକଙ୍କ ପାଖକୁ ସମାନ ଡାକ ପଠାଇବା:** ପ୍ରାପକ ବାକ୍ସରେ କମା ଦ୍ୱାରା ଅଲଗା କରି ଏକାଧିକ ଠିକଣା ଲେଖିବାର ବ୍ୟବସ୍ଥା ଅନେକ କାରିକାରେ ରହିଥାଏ।

**ସନ୍ଦେଶ ତଳେ ଦସ୍ତଖତ ଯୋଡ଼ିବା:** କେତେକ ଇ-ଡାକ କାରିକା ଫାଇଲରୁ ଦସ୍ତଖତ ନେଇ ସନ୍ଦେଶର ଶେଷରେ ଯୋଡ଼ିପାରନ୍ତି। ଏହି ଦସ୍ତଖତ ଫାଇଲ ଗୋଟିଏ ଛୋଟ ଲେଖା ହୋଇପାରେ ଯେଉଁଠି ସାଧାରଣତଃ ନାମ, କମ୍ପାନୀ ନାମ, ଇ-ଡାକ ଠିକଣା ଏବଂ ଆଉ କିଛି ସଂକ୍ଷିପ୍ତ ଉଦ୍ଧୃତାଂଶ ବା ଚିନ୍ତାଟିଏ ରହିଥାଏ। ଏଥିରୁ ଅନ୍ୟମାନେ ତୁମ ବିଷୟରେ ଜାଣିପାରନ୍ତି ଏବଂ ଦରକାର ପଡ଼ିଲେ ଅନ୍ୟ ବାଟରେ ତୁମ ସହିତ ଯୋଗାଯୋଗ କରିପାରନ୍ତି। ଦସ୍ତଖତ ଯୋଡ଼ିବା ପାଇଁ ଉପଯୁକ୍ତ ବାକ୍ସରେ ଚାବି ଦବାଇବାକୁ ପଡ଼ିଥାଏ।

**ଦଲିଲ ଯୋଡ଼ିବା (*ଆଟାଚମେଣ୍ଟ*):** ଇ-ଡାକରେ ଲେଖା ଛଡ଼ା ଅନ୍ୟ ପ୍ରକାରର ଫାଇଲ ମଧ୍ୟ ପଠାଯାଇ ପାରୁଥିବା କଥା ଆଗରୁ ଆମେ ଆଲୋଚନା କରିଛେ। ଏକ 'ସଂଲଗ୍ନ' ନିର୍ଦ୍ଦେଶ (*ଆଟାଚମେଣ୍ଟ କମାଣ୍ଡ*) ଜରିଆରେ ଲେଖା, ହିସାବପତ୍ର, ଚିତ୍ର ଓ ଭିଡିଓ ଆଦିର ଫାଇଲ ତୁମର ଡାକ ସନ୍ଦେଶରେ ଯୋଡ଼ିହେବ। ପାଉଥିବା ଲୋକ ସଂଲଗ୍ନ ସଂଯୋଗ (*ଆଟାଚମେଣ୍ଟ ଲିଙ୍କ*) ଉପରେ ମାଉସ୍ ଦବାଇ ସେହି ଫାଇଲକୁ ତାହାର କମ୍ପ୍ୟୁଟରକୁ ଉତାରି ଆଣିପାରିବ (*ଡାଉନ୍‌ଲୋଡ* କରିପାରିବ) ଏବଂ ଉପଯୁକ୍ତ କାରିକା ସାହାଯ୍ୟରେ ତାହାକୁ ପଢ଼ିପାରିବ। ସଜ୍ଜିତ (*ଫର୍ମାଟେଡ*) ପ୍ରକଳ୍ପ ବିବରଣୀ, ଫଟୋଚିତ୍ର ଓ ଅନ୍ୟ କେତେ ପ୍ରକାରର ତଥ୍ୟ ପଠାଇବା ପାଇଁ ଏହା ଏକ ସହଜ ବାଟ ହୋଇଯାଇଛି। ତେଣୁ ଅନେକ ଲୋକ ଦରକାର କରୁଥିବା ତଥ୍ୟ ବା ଫାଇଲ ବାଣ୍ଟିବାର ପାଇଁ ଗୋଟିଏ ଭଲ ବାଟ ହେଉଛି ଇ-ଡାକ। ଡାକ ସନ୍ଦେଶ ସହିତ ଦ୍ୱିମିକ (*ବାଇନାରୀ*) ଫାଇଲ ସଂଲଗ୍ନ କରିବାପାଇଁ ଇ-ଡାକ କାରିବା *ମାଇମ (ମଲ୍‌ଟିମିଡିଆ ଇଣ୍ଟରନେଟ ମେଲ ଏକ୍ସଟେନ୍‌ସନ୍)* ନାମକ ଏକ ପ୍ରଯୁକ୍ତି କୌଶଳ ବ୍ୟବହାର କରିଥାଏ।

**ଡାକ ମୁଦ୍ରଣ (*ପ୍ରିଣ୍ଟିଙ୍ଗ*):** ଫାଇଲ ମେନୁରୁ ପ୍ରିଣ୍ଟ ବିକଳ୍ପ ବାଛି କୌଣସି ଡାକର ନକଲ ଛପାଯାଇ ପାରିବ।

**ଡାକ ପ୍ରେଷଣ (*ଫରୱାର୍ଡିଙ୍ଗ*):** ଆମେ ପାଇଥିବା ସନ୍ଦେଶକୁ ଅନ୍ୟ କେଉଁ ଆଗ୍ରହୀ ଲୋକ ପାଖକୁ ମଧ୍ୟ

ପଠାଯାଇପାରିବ। ଏଥିପାଇଁ ପ୍ରେଷଣ ବା *ଫରୱାର୍ଡ* ନିର୍ଦ୍ଦେଶକୁ କାମରେ ଲଗାଇବାକୁ ହେବ। ଏହି ନିର୍ଦ୍ଦେଶଟି ପ୍ରାୟ ଉତ୍ତରଦେବା ବା *ରିପ୍ଲାଇ* ନିର୍ଦ୍ଦେଶ ଭଳି କାମ କରିଥାଏ। ତେବେ ପ୍ରେଷଣ ନିର୍ଦ୍ଦେଶ ଦେଲେ ଇ-ଡାକ କାରିକା ପ୍ରାପକ ଢାଗାରେ ମୂଳ ପ୍ରେରକର ଠିକଣା ନଲେଖି ଖାଲି ଛାଡ଼ିଦିଏ। କିନ୍ତୁ ମୂଳ ସନ୍ଦେଶଟି ଆପେ ଆପେ ନୂଆ ସନ୍ଦେଶ କ୍ଷେତ୍ରକୁ ଚାଲିଆସେ। ସେଥିରେ ପ୍ରାପକର ଇ-ଡାକ ଠିକଣା ଲେଖି ଓ ଦରକାର ଥିଲେ ସନ୍ଦେଶର ସଂପାଦନ କରି ତାହାକୁ ପଠାଇଦେଇହେବ।

**ଇ-ଡାକ ଫାଇଲ କରିବା:** ଆସୁଥିବା-ଡାକ ବାକ୍ସ (*ଇନ୍ ବକ୍ସ*) ଦେହରେ ଅନେକଗୁଡ଼ିଏ ଡାକ ହୋଇଗଲେ ଆଉ ଗୋଟିଏ ନୂଆ ଡାକବାକ୍ସ ଖୋଲିହେବ। କିନ୍ତୁ ଗୋଟିଏ ଡାକବାକ୍ସ ରଖିବା ବେଶୀ ସୁବିଧାର କଥା। ଏହି ବାକ୍ସରୁ ଦରକାରୀ ବା ଗୁରୁତ୍ୱପୂର୍ଣ୍ଣ ସନ୍ଦେଶଗୁଡ଼ିକୁ କାଢ଼ିନେଇ ଆମେ ଅଲଗା ଫାଇଲରେ ସାଇତି ରଖିପାରିବା।

**ଡାକ କାଟିଦେବା (ଡିଲିଟିଙ୍ଗ):** ଅଦରକାରୀ ଡାକଗୁଡ଼ିକୁ କାଟି ନଦେଲେ ଆମର ଡାକବାକ୍ସରେ ସେଗୁଡ଼ିକ ଗଦା ହୋଇଯିବ। କୌଣସି ଡାକକୁ କାଟିବା ପାଇଁ ତାହାକୁ ବାଛିକରି (*ହାଇଲାଇଟ୍* କରି) *ଡେଲ୍* ଚାବି ବା *ଡିଲିଟ୍* ବୋତାମ ଦବାଇଲେ ସେହି ଡାକଟି ଅଦରକାରୀ ଡାକ ବାକ୍ସକୁ ଚାଲିଯାଏ ଏବଂ ସେହି ବାକ୍ସ ଖାଲି ନକଲା ଯାଏ ସେଠାରେ ରହିଥାଏ। ଦରକାର ପଡ଼ିଲେ ସେହି ବାକ୍ସରୁ କୌଣସି ଡାକକୁ ବାହାର କରାଯାଇପାରେ।

**ଇ-ଡାକ ଠିକଣା ସାଇତି ରଖିବା:** ଦୁଇଟି ବାଟରେ ଠିକଣା ସବୁ ସାଇତା ଯାଇପାରେ। ଏହାକୁ କିଛି ସୂଚକ ନାମ (*ଆଲିଆସ୍*) ଦେଇ ରଖାଯାଇପାରେ କିମ୍ବା କାରିକାର ଠିକଣା ବହିରେ ରଖାଯାଇପାରେ। ଅଧିକାଂଶ ଇ-ଡାକ କାରିକାରେ ଏହି ଠିକଣା ବହି (*ଆଡ୍ରେସ୍ ବୁକ୍*) ସୁବିଧା ରହିଥାଏ। ମୋଟାମୋଟି ଭାବରେ ଦେଖିଲେ ଏହି ଠିକଣା ବହି ହେଉଛି ଗୋଟିଏ ଫାଇଲ ଯେଉଁଥିରେ ବେଶୀ ଦରକାର ହେଉଥିବା ଠିକଣା ଓ ସେସବୁର ସଂକ୍ଷିପ୍ତ ସୂଚକ ନାମଗୁଡ଼ିକ ରହିଥାଏ। ଏଥିରୁ କୌଣସି ଠିକଣା ନକଲ କରି ଇ-ଡାକର ପ୍ରାପକ ଓ ନକଲପ୍ରାପକ ଢାଗାରେ ଯୋଡ଼ାଯାଇପାରେ। ଏକ ସମୟରେ ଅନେକ ଲୋକଙ୍କ ପାଖକୁ ଡାକ ପଠାଇବାରେ ସୂଚକ ନାମ ବିଶେଷ ସାହାଯ୍ୟ କରିଥାଏ।

କେତେକ ଡାକ କାରିକାରେ ବନାନ ଦେଖିବା ସୁବିଧା ମଧ୍ୟ ମିଳିଥାଏ। ତାହା ନଥିଲେ ଶବ୍ଦ ସଂଯୋଜକର ଅଭିଧାନ କାମରେ ଲାଗିପାରେ।

**ଇ-ଡାକ ସାଇତି ରଖିବା:** ଗୁରୁତ୍ୱପୂର୍ଣ୍ଣ ଡାକଗୁଡ଼ିକୁ ସାଇତିକରି ରଖିହୁଏ। ଏପରି କଲେ ପରେ ତାହାକୁ ଭଲ ଭାବରେ ପଢ଼ିହୁଏ। ଇ-ଡାକ କାରିକାରେ ବିଭିନ୍ନ ଫୋଲଡର ତିଆରି କରିହୁଏ। ସେଥିରେ ଡାକଗୁଡ଼ିକୁ ଅଲଗା ଅଲଗା ବାଛି ରଖିହୁଏ।

**ଡାକ କାରିକାରୁ ବାହାରିବା:** 'ବାହାର' (*ଏକ୍‌ଜିଟ୍ ବା କ୍ୱିଟ୍*) ନିର୍ଦ୍ଦେଶ ଦେଇ ଡାକ କାରିକାରୁ ବାହାରିହୁଏ। ଡାକ ୱିଣ୍ଡୋର ବନ୍ଦ (*କ୍ଲୋଜ୍*) ବୋତାମ ଦବାଇଲେ ମଧ୍ୟ ଡାକ କାରିକାରୁ ବାହାରିହୁଏ।

**ଡାକ ଛାଣିବା (ଫିଲ୍‌ଟରିଙ୍ଗ୍):** ଅନେକ ସମୟରେ ତୁମେ କିଛି ଅଦରକାରୀ (*ଜଙ୍କ୍*) ଡାକ ପାଇପାର। ତୁମପାଇଁ ଏଗୁଡ଼ିକର କୌଣସି ମୂଲ୍ୟ ନଥାଏ, କିନ୍ତୁ ଏସବୁ ତୁମର ଯଥେଷ୍ଟ ସମୟ ନଷ୍ଟ କରିବେ। ଡାକ ବାଛିବା ବା *ଫିଲ୍‌ଟରିଙ୍ଗ* ନାମକ ଏକ ସୁବିଧା ବ୍ୟବହାର କରି ତୁମ ଡାକବାକ୍ସରେ ପହଞ୍ଚିବା ପୂର୍ବରୁ ତୁମେ ଏହି ଡାକଗୁଡ଼ିକୁ ଅଟକାଇ ପାରିବ। ଏଭଳି ଡାକ ଛାଣିବାପାଇଁ ତୁମକୁ କେତୋଟି ଲକ୍ଷଣ ନିର୍ଦ୍ଦିଷ୍ଟ କରିବାକୁ ହେବ। ଯେପରି, ତୁମେ ଏହିଭଳି ଏକ ଫିଲ୍‌ଟର ତିଆରି କରିପାର ଯାହା 'ଜୋକ୍ସ' ଶବ୍ଦଥିବା ସବୁ ସନ୍ଦେଶକୁ ଅଟକାଇଦେବ। କିଛି ନିର୍ଦ୍ଦିଷ୍ଟ ଲେଖା, ତାରିଖ, ବୟସ ବା କିଛି ତାଲିକାକୁ ମିଳାଇ ଡାକଗୁଡ଼ିକୁ ଛାଣିହୁଏ। ଏଭଳି ଛାଣିଲାବେଳେ ଡାକଟିକୁ ଆପେ ଆପେ କାଟି ଦିଆଯାଇପାରେ କିମ୍ବା ଅଲଗା ଫୋଲଡରରେ ରଖାଯାଇପାରେ।

**ଡାକ ବାଛିବା (ସର୍ଟିଙ୍ଗ୍):** ଇ-ଡାକ ସନ୍ଦେଶର ଆରମ୍ଭରେ ତିନୋଟି କଥା ରହିଥାଏ – ପ୍ରେରକ, ବିଷୟ ଏବଂ

ତାରିଖ। ଆସୁଥିବା–ଡାକ ବାକ୍ସରେ ଡାକଗୁଡ଼ିକ ସାଧାରଣତଃ ମିଳିଥିବା ତାରିଖ ଅନୁସାରେ ସଜାଇହୋଇ ରହିଥାଏ। କିନ୍ତୁ ତୁମେ ଚାହିଁଲେ ଅଧିକାଂଶ ୱିଣ୍ଡୋ ଆଧାରିତ ଡାକ କାରିକାରେ ଉପଯୁକ୍ତ ସ୍ତମ୍ଭରେ ମାଉସ୍ ଦବାଇ ଡାକଗୁଡ଼ିକୁ ପ୍ରେରକ କିମ୍ବା ବିଷୟ ଅନୁସାରେ ସଜାଇପାରିବ। ବାଛିବାର ବାଟଟି ବିଭିନ୍ନ କାରିକା ପାଇଁ ଅଲଗା ଅଲଗା ହୋଇପାରେ।




ହଟମେଲ୍ ଠିକଣା ବହି (ଆଡ୍ରେସ୍ ବୁକ୍)।

**ଲାଇନ୍ ବାହାରେ କାମକରିବା (ୱାର୍କିଙ୍ଗ ଅଫ୍‌ଲାଇନ୍):** ଅନେକ ଇ–ଡାକ କାରିକା ଲାଇନ୍ ବାହାରେ କାମ କରିବାର ସୁବିଧା ଯୋଗାଇକରି ସଂଯୋଗ ଖର୍ଚ୍ଚ କମାଇ ପାରନ୍ତି। ଏଭଳି କାମକରିବାର ପାଦଗୁଡ଼ିକ ହେଲା:

- ଇଣ୍ଟରନେଟ ସହିତ ସଂଯୋଗ ସ୍ଥାପନ କର।
- ତୁମର ଇ–ଡାକ ସବୁ ନିଜ କମ୍ପ୍ୟୁଟରକୁ ନେଇଆସ (ଡାଉନଲୋଡ କର)।
- ଇଣ୍ଟରନେଟରୁ ବାହାରିଆସ।
- ତୁମର ଡାକ ପଢ଼ ଓ ନୂଆ ସନ୍ଦେଶ ଲେଖ। ଏହା ହିଁ ଲାଇନ୍ ବାହାରେ କାମକରିବା ବା ଇଣ୍ଟରନେଟ ସହିତ ସଂଯୁକ୍ତ ହୋଇନଥିଲା ବେଳେ ସେ ସଂପର୍କୀୟ କାମ କରିବା।
- ଇଣ୍ଟରନେଟ ସହିତ ସଂଯୋଗ ଯୋଡ଼।
- ତୁମର ନୂଆ ସନ୍ଦେଶ ପଠାଅ ଓ ଯଦି କିଛି ନୂଆ ସନ୍ଦେଶ ଆସିଥାଏ ତାହାକୁ ଡାଉନଲୋଡ କର।
- ଇଣ୍ଟରନେଟରୁ ସଂପର୍କ ଛିନ୍ନକର।

### *ହସମୁହଁ (ସ୍ମାଇଲି) ଓ ଅନ୍ୟ ଆଳାପ ସଙ୍କେତ (କମ୍ୟୁନିକନ୍ସ୍)*

ଆଗେ ଡାକ ସହିତ ଛବି ଫାଇଲ ପଠାଇବା ସମ୍ଭବ ହେଉନଥିଲା। ତେଣୁ ଅନ୍ୟକୁ ଅଭିନନ୍ଦନ ଜଣାଇବା ପାଇଁ, ଲୋକେ ବିଭିନ୍ନ ଅକ୍ଷର ଓ କେତୋଟି ନିର୍ଦ୍ଦିଷ୍ଟ ସଙ୍କେତକୁ ପରଦାର ଭିନ୍ନ ଭିନ୍ନ ସ୍ଥାନରେ ରଖି ଚିତ୍ର ତିଆରି କରୁଥିଲେ। ଠିକ୍ ସେହିପରି, ସନ୍ଦେଶ ଜରିଆରେ ଭାବ ଓ ଅଙ୍ଗଭଙ୍ଗୀ ଜଣାଇବା ପାଇଁ ବିଭିନ୍ନ ପ୍ରକାରର ସଙ୍କେତ ବ୍ୟବହାର କରୁଥିଲେ। ଏହି ସବୁକୁ ସ୍ମାଇଲି ବା 'ଆଳାପ ସଙ୍କେତ' (କମ୍ୟୁନିକେସନ୍ ଆଇକନ୍ସ୍ ବା କମ୍ୟୁନିକନ୍ସ୍) କୁହାଯାଏ। ଏହି ସ୍ମାଇଲିଗୁଡ଼ିକୁ କଡ଼କୁ ଢଳାଇକରି (କୋଲନଟିକୁ ଉପର

ପଟକୁ ରଖି) ଦେଖିଲେ ସେଗୁଡ଼ିକ ବିଭିନ୍ନ ଆବେଗର ମଣିଷ ମୁହଁଭଳି ଜଣାପଡ଼େ। ସ୍ମାଇଲି 'ଆବେଗ ସଙ୍କେତ' (ଇମୋଟିକନ୍ – ଇମୋସନ୍ ଆଇକନ୍) ନାଁରେ ମଧ୍ୟ ଜଣା। କିଛି ଜନପ୍ରିୟ ସ୍ମାଇଲିର ତାଲିକା ତଳେ ରହିଛି।

| ସଙ୍କେତ | ସୂଚିତ ଆବେଗ | ସଙ୍କେତ | ସୂଚିତ ଆବେଗ |
|---|---|---|---|
| :'-( | କାନ୍ଦ | :> | ଦୁଷ୍ଟାମୀ ହସ |
| :-) | ମୁରୁକି ହସ | :] | ବୋକାମି ହସ |
| :-D | ଜୋର ହସ | 8-) | ଚଷମାପିନ୍ଧା ହସ |
| :-( | ବିରକ୍ତି | :-\| | ଶୂନ୍ୟ ଦୃଷ୍ଟି |
| :-O | ବିସ୍ମୟ | :-< | ଦୁଃଖିତ ମୁହଁ |
| :-] | ଆଖିମିଟିକା | | |

ଇ-ଡାକ ଜରିଆରେ ଚିଠି ଦିଆନିଆ କଲାବେଳେ କିଛି ଇଂରାଜୀ ପଦର ସଂକ୍ଷେପ ବିଶେଷ ଭାବରେ ବ୍ୟବହୃତ ହୋଇଥାଏ। ଏଭଳି କିଛି ସାଧାରଣ ସଂକ୍ଷେପ ହେଉଛି –

| ସଂକ୍ଷିପ୍ତ ରୂପ | ପୂରା ରୂପ (ଅର୍ଥ) |
|---|---|
| BTW | ବାୟ ଦି ୱେ (କଥାର କ୍ରମରେ) |
| FAQ | ଫ୍ରିକ୍ୱେଣ୍ଟଲି ଆସ୍କଡ୍ କ୍ୱେସ୍ଚିନ୍ସ (ଅନେକ ସମୟରେ ପଚରାଯାଉଥିବା ପ୍ରଶ୍ନ) |
| FYI | ଫର ୟୋର ଇନ୍ଫରମେସନ୍ (ଆପଣଙ୍କ ସୂଚନା ପାଇଁ) |
| IMHO | ଇନ୍ ମାଇ ଅମ୍ବଲ ଓପିନିଅନ (ମୋର ବିନୀତ ମତରେ) |
| IMO | ଇନ୍ ମାଇ ଓପିନିଅନ (ମୋର ମତରେ) |
| IOW | ଇନ୍ ଅଦର ୱର୍ଡସ (ଅନ୍ୟ ଶବ୍ଦରେ) |
| WRT | ଉଇଥ ରେସପେକ୍ଟ ଟୁ (ତାହା ସମ୍ପର୍କରେ) |
| AKA | ଅଲ୍ସୋ ନୋନ୍ ଏଜ୍ (ଅନ୍ୟ ଭାବରେ ଜଣା) |
| LOL | ଲାଫିଙ୍ଗ୍ ଆଉଟ୍ ଲାଉଡ୍ (ହସାଇବାର କଥା) |
| TIC | ଟଙ୍ଗ୍ ଇନ୍ ଚିକ୍ (ଥଟାରେ କହିବା) |

*ଅପହଞ୍ଚ ଡାକ (ବାଉନ୍ସ୍ଡ ମେଲ୍)*

ଭୁଲ ଠିକଣା, ଅଜଣା ସେବକ, ଅଜଣା ବ୍ୟବହାରକାରୀ, ଯନ୍ତ୍ର ବା କାରିକାରେ ତ୍ରୁଟି, ବା ଅନ୍ୟ କିଛି ସଞ୍ଚାର ସମସ୍ୟା ଯୋଗୁ ଯେଉଁ ଡାକ ପ୍ରେରକ ପାଖକୁ ଫେରିଆସିଥାଏ ତାହାକୁ ଅପହଞ୍ଚ ଡାକ କୁହାଯାଏ। ଅନେକ ଡାକ ବ୍ୟବସ୍ଥାରେ ଫେରିଆସିଥିବା ଅପହଞ୍ଚ ଡାକରେ ପ୍ରେରକର ନାମ *ମେଲର ଡେମନ* ହୋଇଥାଏ। ଅପହଞ୍ଚ ଡାକର ଶିରୋନାମା (*ହେଡର*) ଦେଖି କ'ଣ ଅସୁବିଧା ହୋଇଛି ଓ କ'ଣ ଉପଚାର କରାଯାଇପାରିବ ତାହା ଆମେ ଜାଣିପାରିବା। ପ୍ରାପକ ପାଖରେ ପହଞ୍ଚିବାପାଇଁ ଯେଉଁସବୁ ବାଟଦେଇ ଚିଠିଟି ଯାଇଛି ସେ ସବୁର ନାମ ସାଧାରଣତଃ ଚିଠିର ଶିରୋନାମାରେ ରହିଥାଏ।

ଯଦି ତୁମେ କାହାପାଖକୁ ଡାକ ପଠାଅ ଏବଂ ଅଦ୍ଭୁତ ଅସଫଳ ସନ୍ଦେଶ ଫେରିପାଅ ତାହାହେଲେ ତୁମେ ପୋଷ୍ଟମାଷ୍ଟରଙ୍କ ପାଖକୁ ସନ୍ଦେଶଟିଏ ପଠାଇବାର ଚେଷ୍ଟା କରିପାରିବ। ଡାକ ପଠାଇପାରୁଥିବା ଓ ପାଇପାରୁଥିବା ପ୍ରତ୍ୟେକ ଇଣ୍ଟରନେଟ ସେବକ (ହୋଷ୍ଟ) ପାଇଁ ପୋଷ୍ଟମାଷ୍ଟର ନାମରେ ଏକ ବିଶେଷ ଡାକ ଠିକଣା ଥାଏ। ପୋଷ୍ଟମାଷ୍ଟର ହିଁ ସେହି ସେବକର ଦାୟିତ୍ୱରେ ଥା'ନ୍ତି।

## ଚତୁର୍ଥ ଅଧ୍ୟାୟ

# ଦଳଗତ ସୂଚନା ବିନିମୟ

ଆମେ ଦେଖିସାରିଲେଣି ଯେ ଯୋଗାଯୋଗ ପାଇଁ ଇ-ଡାକ ହେଉଛି ଗୋଟିଏ ବଡ଼ ଉପକରଣ। କିନ୍ତୁ ଏହା ମୁଖ୍ୟତଃ ଦୁଇଟି ଲୋକଙ୍କ ଭିତରେ ଯୋଗାଯୋଗର ଗୋଟିଏ ବାଟ। ଏହାକୁ ଆମେ ଦଳଗତ ଯୋଗାଯୋଗ ପାଇଁ କାମରେ ଲଗାଇପାରିବା କି? ଏଥିପାଇଁ ଆମେ ଅବଶ୍ୟ ଗୋଟିଏ ଡାକର ନକଲ ଅନେକ ଲୋକଙ୍କ ପାଖକୁ ପଠାଇପାରିବା। ତେବେ ଏହି କାମକୁ ଅନ୍ୟ କିଛି ସୁବିଧା ଧାରାରେ ଚଳାଇ ପାରିବା କି? ଇ-ଡାକ ସାହାଯ୍ୟରେ ଆମେ ଗୋଟିଏ ଆଲୋଚନା ଦଳ *(ଡିସ୍‌କସନ ଗ୍ରୁପ)*ର ସ୍ଥାପନା ଓ ପରିଚାଳନା କରିପାରିବା କି?

ଆଲୋଚନା ଦଳ କହିଲେ ଆମେ କ'ଣ ବୁଝୁଛେ ପ୍ରଥମେ ସେ ବିଷୟରେ ସ୍ପଷ୍ଟ ହେବା। ମନେକର ଯେ ଆମେ ଏକ ନିର୍ଦ୍ଦିଷ୍ଟ ମହାବିଦ୍ୟାଳୟରେ ଏକା ଶ୍ରେଣୀରେ ପଢୁଥିଲେ, କିନ୍ତୁ ଏବେ ଆମେ ପୃଥିବୀସାରା ଖେଳାଇ ହୋଇଯାଇଛେ। କିଏ ଏବେ କେଉଁ ଜାଗାରେ ଅଛି ତାହା ଜାଣିବାରେ, ପୁରୁଣା କଲେଜ ଦିନଗୁଡ଼ିକ ବିଷୟରେ ଆଲୋଚନା କରିବାରେ ଏବଂ ଆମର ପୁରୁଣା ଶିକ୍ଷାନୁଷ୍ଠାନର କିଭଳି ଉନ୍ନତି ହେବ ସେ ବିଷୟରେ କିଛି ଯୋଜନା ଓ କାମ କରିବାରେ ଆମେ ଆଗ୍ରହୀ। ଗୋଟିଏ ଜାଗାରେ ଏକାଠିହେବା, ଯାହାକି ବସ୍ତୁତଃ ସମ୍ଭବନୁହେଁ, ବଦଳରେ ଆମେ ଇ-ଡାକ ବ୍ୟବହାର କରି ଏକ ଆଭାସୀ ଆଲୋଚନା ଦଳ ଗଢ଼ିପାରିବା।

### *ଇ-ଡାକ ଆଲୋଚନା ଦଳ (ଡିସ୍‌କସନ ଗ୍ରୁପ)*

ତେବେ ଆମେ ଏହାକୁ ପ୍ରକୃତରେ କରିବା କିପରି। ମନେକର ଆମେ ୩୦ ଜଣ ସାଥୀ ରହିଛେ ଏବଂ ପ୍ରତ୍ୟେକଙ୍କୁ ଠାବ କରିବା ସହିତ ସେମାନଙ୍କର ଇ-ଡାକ ଠିକଣା ମଧ୍ୟ ପାଇପାରିଛେ। ପ୍ରତ୍ୟେକଙ୍କ ପାଖକୁ ଏକା ଡାକ ଲେଖିବା ପାଇଁ ଆମେ ଇ-ଡାକ ସନ୍ଦେଶରେ ପ୍ରାପକ ଓ ନକଲ-ପ୍ରାପକ ବାକ୍ସରେ ସମସ୍ତଙ୍କର ଇ-ଡାକ ଠିକଣା ଭରିପାରିବା। ଏହା କାମ କରିବ ସତ, ତଥାପି ଏହା ବେଶ୍ ଅଖାଡୁଆ ହେବନାହିଁ କି? ତାହାହେଲେ ବିକଳ୍ପ କ'ଣ? ଯଦି ଆମେ ସମସ୍ତଙ୍କ ପାଇଁ ଗୋଟିଏ 'ସୂଚକ ନାମ' *(ଆଲିଅସ୍)* ସୃଷ୍ଟି କରିପାରିବା, ଯହିଁରେ କି ତିରିଶଟିଯାକ ଇ-ଡାକ ଠିକଣା ରହିଥିବ, ତେବେ ଆମର କାମଟି ସରଳ ହୋଇଯିବ। ଉଦାହରଣ ସ୍ୱରୂପ, ସେହି ୩୦ଟି ଠିକଣାକୁ ନେଇ ଆମେ batch72@onelist.com ନାମରେ ଏକ ଏଲିଆସ ତିଆରି କରିବା। ବର୍ତ୍ତମାନ ତୁମେ ସମସ୍ତଙ୍କ ପାଖକୁ ଡାକ ପଠାଇବାକୁ ଚାହିଁଲେ, ତୁମକୁ କେବଳ batch72@onelist.com ଠିକଣାରେ ଗୋଟିଏ ଚିଠି ପଠାଇବାକୁ ହେବ। ଯେଉଁ କମ୍ପ୍ୟୁଟରରେ ଏହି ଡାକବାକ୍ସ ଥିବ ସେଥିରେ ୩୦ଟିଯାକ ଠିକଣା ରହିଥିବ ଏବଂ ସେହି ଡାକ୍‌ର ଗୋଟିଏ ଗୋଟିଏ ନକଲ ପ୍ରତ୍ୟେକଙ୍କ ପାଖକୁ ଚାଲିଯିବ। ଯଦି କେହି ଏହି ଠିକଣାରେ ଉତ୍ତର ଦେବ ଆଗଭଳି ତାହାର ୩୦ଟି ନକଲ ହୋଇ ସମସ୍ତଙ୍କ ପାଖକୁ ପଠାହୋଇଯିବ। ଲକ୍ଷକର ଯେ ଏଠାରେ ତାଲିକାର ଅଂଶବିଶେଷ

ହୋଇଥିବା ଯୋଗୁ ପ୍ରେରକ ମଧ୍ୟ ତା ନିଜ ଡାକର ନକଲଟିଏ ପାଇବ। ଏହା ପ୍ରକୃତରେ ସହଜ ଓ ଆମ ସମସ୍ତଙ୍କ ଭିତରେ ଆଲୋଚନା ପାଇଁ ଭଲ ସୁବିଧା ଯୋଗାଉଛି ବୋଲି ତୁମେ ଭାବୁନାହଁ କି?

ଏହି କାମରେ ଜଣେ କାହାକୁ ଠିକଣା ତାଲିକାର ଦେଖାଶୁଣା ହାତରେ କରିବାକୁହେବ। କାରଣ କର୍ମସ୍ଥଳୀ ବଦଳାଇବା ଯୋଗୁ ଅନେକଙ୍କର ଇ-ଡାକ ଠିକଣା ବଦଳିଯିବାର ସମ୍ଭାବନା ରହିଛି। ଆହୁରି ମଧ୍ୟ ସମ୍ଭାବନା ରହିଛି ଯେ କେହି କେହି ଏହି ତାଲିକାରୁ ଓହରି ଯିବାପାଇଁ ମଧ୍ୟ ଚାହିଁବେ କାରଣ ଏହି ଆଲୋଚନା ସେମାନଙ୍କୁ ନିରର୍ଥକ ଲାଗିପାରେ। ଆଗରୁ ଜଣାନଥିବା କେଉଁ ସାଥୀର ଠିକଣା ହୁଏତ ଆମକୁ ଏବେ ମିଳିଯାଇପାରେ ଏବଂ ଏଥିରେ ମିଶିବା ପାଇଁ ସେମାନେ ମନ ବଳେଇ ପାରନ୍ତି। ତେଣୁ ତାଲିକାର ଦାୟିତ୍ୱରେ ଥିବା ଲୋକଙ୍କୁ ଏହି ସବୁ ଅଦଳ ବଦଳ କାମ କରିବାକୁ ପଡ଼ିବ। କାହାରି ସମୟ ନନେଇ ମଧ୍ୟ କିଛି କାରିକା ସାହାଯ୍ୟରେ ଏହି କାମଟିକୁ ଆପେଆପେ କରାଯାଇପାରିବ। ***ଲିଷ୍ଟସର୍ଭ, ଲିଷ୍ଟପ୍ରୋକ*** ଏବଂ *ମେଜରଡୋମୋ* ଆଦି କିଛି ସ୍ୱତନ୍ତ୍ର କାରିକା ସ୍ୱୟଂକ୍ରିୟ ଭାବରେ ତାଲିକାରେ କଟାଯୋଡ଼ା କରିପାରିବେ।

ଗୋଟିଏ ତାଲିକାରେ ସଦସ୍ୟ ହେବାପାଇଁ ବା ସେଥିରୁ ବାହାରିଯିବାପାଇଁ କିଛି ନିର୍ଦ୍ଦିଷ୍ଟ ଶବ୍ଦଥିବା ଗୋଟିଏ ଇ-ଡାକ ପଠାଇବାକୁ ହେବ। ଉଦାହରଣ ସ୍ୱରୂପ, listserv@onelist.com ଠିକଣାରେ ଆମେ ସନ୍ଦେଶ ପଠାଇପାରିବା 'lxn_oricom@hotmail.com ଠିକଣାକୁ ବ୍ୟାଚ୍୭୨ ତାଲିକାରେ ଯୋଡ଼ିଦିଅ'।

ଉପରେ ଆମେ କଥାହୋଇଥିବା ବ୍ୟାଚମେଟ ଆଲୋଚନା ଦଳ ଭଳି ଖେଳକୁଦରୁ ଜୈବିକ କୃଷି ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ବିଷୟକୁ ନେଇ ପ୍ରାୟ ୯୦,୦୦୦ ଇ-ଡାକ ଆଲୋଚନା ଦଳ ରହିଛି। କେବଳ କିଛି ଉପଯୁକ୍ତ ଦଳ ବାଛି ତୁମକୁ ତାହାର ସଦସ୍ୟ ହେବାକୁ ପଡ଼ିବ। ତା'ପରେ ମୁଖ୍ୟ ଆଲୋଚନାର ବିଭିନ୍ନ ଦିଗ ଉପରେ ଭିନ୍ନ ଭିନ୍ନ ସଦସ୍ୟଙ୍କଠାରୁ ତୁମେ ଯଥେଷ୍ଟ ଡାକ ପାଇବ। ନିଜ ମତ ସପକ୍ଷରେ ଆବେଗର ସହିତ ଯୁକ୍ତି ବାଢୁଥିବା ଲୋକଙ୍କୁ ମଧ୍ୟ ତୁମେ ସେଠାରେ ଦେଖିବ। ଏହା ବେଶ୍ ଆଗ୍ରହଜନକ ଲାଗିପାରେ କିମ୍ବା ବେଳେବେଳେ ମନେ ହୋଇପାରେ ଯେ ଅଯଥାରେ ଗୁଡ଼ିଏ ମୂଲ୍ୟହୀନ ଆଲୋଚନା ହେଉଛି।

ତେବେ ଏହା ଏକ ଭଲ କଥା ଯେ ଇ-ଡାକ ଭଳି ସରଳ ଉପକରଣ କେମିତି ଏକ ଆଭାସୀ ଗୋଷ୍ଠି ତିଆରିରେ ସାହାଯ୍ୟ କରିପାରୁଛି। ତୁମେ ଜାଣିଛ କି ପ୍ରାକୃତିକ ଦୁର୍ବିପାକ ସମୟରେ ଏହିସବୁ ଆଲୋଚନା ଦଳ ଖବର ପହଞ୍ଚାଇବାରେ, ପାଣ୍ଠି ସଂଗ୍ରହରେ ଏବଂ ଅନ୍ୟ ସହାୟତା ଯୋଗାଇବାରେ ବଡ଼ ଭୂମିକା ନେଇଥାଏ?

କେତେକ ଇ-ଡାକ ଆଲୋଚନା ଦଳରେ ଜଣେ ପରିଚାଳକ *(ମଡରେଟର)* ରହିଥା'ନ୍ତି, ଯିଏକି ସଦସ୍ୟମାନେ ପଠାଇଥିବା ଡାକଗୁଡ଼ିକର ଉପଯୋଗିତା ଦେଖନ୍ତି ଏବଂ ସେହି ଅନୁଯାୟୀ ଅନ୍ୟ ସଦସ୍ୟମାନଙ୍କ ପାଖକୁ ପଠାନ୍ତି। ଏହିଭଳି ଦଳକୁ ପରିଚାଳିତ ଆଲୋଚନା ଦଳ *(ମଡରେଟେଡ୍ ଡିସ୍କସନ୍ ଗ୍ରୁପ୍)* କୁହାଯାଇଥାଏ। କିଛି ପରିଚାଳିତ ଆଲୋଚନା ଦଳରେ ଆସୁଥିବା ସବୁ ଡାକକୁ ଏକାଠିକରି ଗୋଟିଏ ମାତ୍ର ଫାଇଲରେ ସଦସ୍ୟମାନଙ୍କ ପାଖକୁ ପଠାଯାଏ। ଫଳରେ ଅଲଗା ଅଲଗା ସମୟରେ ପଠାଯାଉଥିଲେ ମଧ୍ୟ ଡାକଗୁଡ଼ିକ ଏକ ନିର୍ଦ୍ଦିଷ୍ଟ ଦିନରେ ତୁମ ପାଖରେ ପହଞ୍ଚିଥାଏ।

### *ୟୁଜନେଟ ସମ୍ବାଦ*

ଇ-ଡାକ ଆଲୋଚନା ଦଳ ଭଳି *ୟୁଜନେଟ* ନାମରେ ଆଉ ଗୋଟିଏ ସେବା ରହିଛି। *ୟୁଜର୍ସ ନେଟୱର୍କ* ବା 'ବ୍ୟବହାରକାରୀଙ୍କ ଜାଲକ' ପାଇଁ ଏହା ଏକ ସଂକ୍ଷେପ। ଏହା ହେଉଛି ଏକ ସୂଚନା ବିନିମୟ ବ୍ୟବସ୍ଥା ବା *ବୁଲେଟିନ ବୋର୍ଡ*, ଯାହା ଜରିଆରେ ଲକ୍ଷ ଲକ୍ଷ ଲୋକ ସବୁ ପ୍ରକାରର ବିଷୟ ଉପରେ ସୂଚନା ଦିଆନିଆ କରିଥା'ନ୍ତି।

ୟୁଜନେଟ୍ ନିଉଜଗ୍ରୁପ (ସମ୍ବାଦମଞ୍ଚ) ବିଷୟରେ ଆଗେଇବା ଆଗରୁ *ବୁଲେଟିନ୍ ବୋର୍ଡ* ବିଷୟରେ ଆମେ ପ୍ରଥମେ ବୁଝିବା। ତୁମ ସ୍କୁଲର ନୋଟିସ ବୋର୍ଡ ତୁମେ ଦେଖିଛ। ସେଥିରେ ତୁମର ଛୁଟି ଓ ପରୀକ୍ଷା ଆଦି ବିଷୟରେ ସବୁ ନୋଟିସ ମରାଯାଇଥାଏ। ସେଥିରେ କିଛି ଜରୁରୀ କଥା ବାହାରିଛି କି ନାହିଁ ତାହା ଜାଣିବା ପାଇଁ ତୁମେ ସବୁବେଳେ ସେଥିରେ ଆଖିପକାଅ। ମନେକର ଯେ ତୁମେ ସବୁ ସାଙ୍ଗ ମିଶିକରି ଗୋଟିଏ ନୋଟିସ ବୋର୍ଡ ବସାଇଛ ଏବଂ ଯିଏ ଯାହାକିଛି ଦରକାରୀ ସୂଚନା ପାଇଲେ ସେଥିରେ ଲଗାଇପାରିବ। ଅନ୍ୟ ସାଙ୍ଗମାନଙ୍କ କେହି କିଛି ଜଣାଇବାକୁ ଚାହୁଁଥିଲେ ତାହାକୁ ବି ସେ ସେହି ବୋର୍ଡରେ ଲଗାଇପାରିବ। କେଉଁଠି ପିକ୍‌ନିକ୍ କରିବା ବା ସେଭଳି ଅନ୍ୟ କିଛି ନିଷ୍ପତ୍ତି ବିଷୟରେ ସମସ୍ତେ ନିଜର ମତାମତ ସେଠାରେ ଲଗାଇପାରିବେ। ମୋଟାମୋଟି ଭାବରେ ସୂଚନା ବିନିମୟ କରିବା ଦିଗରେ ଏହି ନୋଟିସ ବୋର୍ଡଟି ତୁମମାନଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ମାଧ୍ୟମ ହୋଇଯିବ। ସବୁକଥା ଜାଣିବା ପାଇଁ ପ୍ରତ୍ୟେକ ପିଲା ମଝିରେ ମଝିରେ ଏହାକୁ ଦେଖିବେ ଏବଂ ଯେ କେହି ବି ଯେକୌଣସି ସମୟରେ ସେଥିରେ କିଛି ଖବର ରଖିପାରିବ। ଏହି ନୋଟିସ ବୋର୍ଡକୁ ଆମେ ଗୋଟିଏ *ବୁଲେଟିନ ବୋର୍ଡ* ଭାବରେ ଦେଖିପାରିବା।

କମ୍ପ୍ୟୁଟରରେ ମଧ୍ୟ ଆମେ ଏଭଳି ଏକ ବୁଲେଟିନ ବୋର୍ଡର ପରିକଳ୍ପନା କରିପାରିବା। ଏଠାରେ କୌଣସି ଗୋଟିଏ କେନ୍ଦ୍ରୀୟ କମ୍ପ୍ୟୁଟର ଆମର ବୁଲେଟିନ ବୋର୍ଡର କାମ କରିବ। ସବୁ ବ୍ୟବହାରକାରୀ ଏହି କମ୍ପ୍ୟୁଟର ସହିତ ଯୋଡ଼ିହୋଇପାରିବେ ଏବଂ ସେଥିରେଥିବା ସୂଚନା ସବୁ ପଢ଼ିପାରିବେ ଓ କିଛି ନୂଆ ସୂଚନା ସେଥିରେ ଛାଡ଼ିପାରିବେ। ୟୁଜନେଟ୍ ଏହିଭଳି ଏକ ବୁଲେଟିନ ବୋର୍ଡ ବ୍ୟବସ୍ଥା। ଜାଣିହେଉଥିବ ଯେ ୟୁଜନେଟ ସମ୍ବାଦମଞ୍ଚ ଇ-ଡାକ ଆଲୋଚନା ଦଳଠାରୁ ଏଇ ଅର୍ଥରେ ଅଲଗା ଯେ କୌଣସି ୟୁଜନେଟ୍ ଦଳପାଖକୁ ପଠାଯାଇଥିବା ସନ୍ଦେଶଗୁଡ଼ିକ କିଛି କେନ୍ଦ୍ରୀୟ କମ୍ପ୍ୟୁଟରରେ ଗଚ୍ଛିତ ରହେ ଏବଂ ତାହାକୁ ପଢ଼ିବା ପାଇଁ ବ୍ୟବହାରକାରୀଙ୍କୁ ସେହି କମ୍ପ୍ୟୁଟର ସହିତ ସଂଯୁକ୍ତ ହେବାକୁପଡ଼େ। ମନେଥିବ ଯେ ଇ-ଡାକ ଆଲୋଚନା ଦଳରେ ସୂଚନାଗୁଡ଼ିକ ତାଲିକାର ପ୍ରତି ସଦସ୍ୟର ଇଲେକଟ୍ରୋନିକ ଡାକବାକ୍ସରେ ଆସି ପହଞ୍ଚେ।



group:nl.newsgroups.announce

Usenet Advanced Search
Usenet Help

⊙ Search Newsgroups (Beta) ○ Search the Web

Click here for information about upcoming improvements to this beta version of Google's Usenet search.

**Relevant Usenet Messages for group:nl.newsgroups.announce** Results 1 - 30 of about 233 Search took 0.2

Usenet Help How can I post? sort by date? read my favorite group? view threads? Article Summary View Full A

FAQ/VVV: Waarom binarygroups ongewenst zijn in nl.*
Branko Collin <collin@xs4all.nl> Perry Rovers <Perry.Rovers@IAE.nl> —
Waarom binarygroups ongewenst ...
14/Feb/2001 by Perry.Rovers@IAE.nl - View Thread

RFD-2: nl.support.slapeloos
—-BEGIN PGP SIGNED MESSAGE—- REQUEST FOR DISCUSSION (RFD) unmoderated newsgroup
nl.support.slapeloos This is a formal Request For Discussion ...
11/Feb/2001 by Rosalind Hengeveld - View Thread

CFV-3 nl.reizen.tent

ଗୁଗଲ ସମ୍ବାଦମଞ୍ଚ ତାଲିକା।

ପୃଥିବୀର ଚାରିଆଡ଼େ ଏବେ ପଚାଶ ହଜାରରୁ ଅଧିକ ୟୁଜନେଟ୍ ଦଳ ରହିଛନ୍ତି। ତହିଁରୁ ଅନେକଗୁଡ଼ିଏ ହେଉଛନ୍ତି ବୌଦ୍ଧିକ ବିଷୟ ଆଧାରିତ ଏବଂ ଆହୁରି ବେଶୀ ସମ୍ବାଦମଞ୍ଚ ହେଉଛନ୍ତି ଅବସର ବିନୋଦନ ସମ୍ପର୍କିତ। ତୁମେ ଅଧାକପାଳୀ ମୁଣ୍ଡବିନ୍ଧା ରୋଗୀ କି? ତେବେ alt.support.headaches.migraine ସମ୍ବାଦମଞ୍ଚ ତୁମକୁ ସାହାଯ୍ୟ କରିପାରିବ। ତୁମେ ଶିକାରୀ କୁକୁର ପାଳିଛ କି? ତେବେ rec.hunting.dogs ସମ୍ବାଦମଞ୍ଚରେ ତୁମେ ଆଗ୍ରହୀ ହୋଇପାର। ଆଉ କିଛି ଆଗ୍ରହଜନକ ସମ୍ବାଦମଞ୍ଚର ଉଦାହରଣ ତଳେ ଦିଆଯାଇଛି। ସେଥିରୁ ସମ୍ବାଦମଞ୍ଚଗୁଡ଼ିକର ବିବିଧତା ବିଷୟରେ କିଛି ଧାରଣା ତୁମେ ପାଇପାରିବ।

sci.physics.fusion
soc.genealogy.hispanic
biz.jobs.offered
rec.arts.animation
alt.autos.antique

ଅବଶ୍ୟ କମ୍ପ୍ୟୁଟର ବିଷୟରେ ଅସଂଖ୍ୟ ସମ୍ବାଦମଞ୍ଚ ରହିଛନ୍ତି। ଦେଜା ଆଲୋଚନା ୱେବସ୍ଥଳୀରେ (http://www.deja.com/) ଖୋଜିଲେ ତୁମେ ତୁମ ଆଗ୍ରହର ସମ୍ବାଦମଞ୍ଚ ପାଇପାରିବ। ସମ୍ବାଦମଞ୍ଚ ବିଷୟରେ ଅଧିକ ଜାଣିବା ପାଇଁ ମଧ୍ୟ ଦେଜା ସନ୍ଦେଶସ୍ଥଳୀ ହେଉଛି ଗୋଟିଏ ଭଲ ଜାଗା।

କୌଣସି ସମ୍ବାଦମଞ୍ଚ ଗୋଟିଏ ଆଲୋଚନା ଧାର ବା *ଷ୍ଟ୍ରିଙ୍ଗ* ସୃଷ୍ଟି କରିପାରେ କିମ୍ବା କେତେକ ସମ୍ପର୍କିତ ସନ୍ଦେଶକୁ ଏକାଠି କରି ଖିଅ ବା *ଥ୍ରେଡ୍* ବାହାରକରିପାରେ। ପ୍ରତିଟି ନୂଆ ସନ୍ଦେଶ ସମ୍ବାଦମଞ୍ଚର ସାମଗ୍ରିକ

Address http://groups.google.com/ Go

Google

Google Acquires Deja's Usenet Archive
~ Google Releases Beta Service In Transition ~

Acquired
Google Acquires Deja's Usenet Discussion Service. Read our press release.

New to Usenet?
Learn the basics about reading, posting and participating.

Looking for Deja.com's Precision Buying Service?
eBay's Half.com has

Search Newsgroups

Google Search | Usenet Adva | Usenet Help

Search Newsgroups (Beta) Search the Web

Google Inc. has acquired significant assets from Deja.com, including its archi than 500 million messages--a terabyte of human conversation dating back to 1

Since reaching agreement with Deja, Google has been working non-stop to res to these messages, which form the largest archive of newsgroups on the net. W developing a more fully-featured service, Google has released a beta version t high speed, high quality access to newsgroup postings already archived by Goo August 2000.

For more information about the transition from Deja to Google, please read G

ଦେଜା ଆଲୋଚନା ୱେବସ୍ଥଳୀ – www.deja.com।

ବିଷୟବସ୍ତୁ ଉପରେ ଆସିଥିବା ପୂର୍ବ ସନ୍ଦେଶଗୁଡ଼ିକର ଉତ୍ତର ରୂପରେ ଆସେ। ତୁମ ମନରେ ବେଶୀ ଆଗ୍ରହ ସୃଷ୍ଟି କରୁଥିବା ସନ୍ଦେଶର ଉତ୍ତର ତୁମେ ଦେଇପାର।

ସମ୍ବାଦମଞ୍ଚର ନାଁଗୁଡ଼ିକ ସେଥିରେ ଆଲୋଚିତ ବିଷୟବସ୍ତୁର ସୂଚନା ଦେଇଥାଏ। ଦୁଇ ବା ଅଧିକ ଶବ୍ଦକୁ ବିନ୍ଦୁ ସାହାଯ୍ୟରେ ଅଲଗାକରି ଏହି ନାଁ ଗଢ଼ାଯାଏ। rec.sport.basketball.pro ଏଭଳି ନାଁର ଗୋଟିଏ ଉଦାହରଣ। ଏଠାରେ ପ୍ରଥମ ଶବ୍ଦ rec ମୁଖ୍ୟ ବିଷୟକୁ ସୂଚାଉଛି। ତା'ର ପର ଶବ୍ଦଗୁଡ଼ିକ ମୁଖ୍ୟ ବିଷୟର ଆହୁରି ନିର୍ଦ୍ଦିଷ୍ଟ ବିଭାଗ କଥା ଜଣାଇଦିଏ। ସମ୍ବାଦମଞ୍ଚ ପାଇଁ କିଛି ମୁଖ୍ୟ ବିଷୟ ହେଉଛି –

comp: ସବୁ କମ୍ପ୍ୟୁଟର ବିଷୟକ ଆଲୋଚନା
misc: ଅନ୍ୟ କେଉଁ ଦଳରେ ଆସୁନଥିବା ସବୁ ବିଷୟ
news: ଇଣ୍ଟରନେଟ ଓ ନେଟୱର୍କ ସମ୍ପର୍କିତ ଘଟଣା ସବୁ
rec: ଅବସର ବିନୋଦନ
sci: ବିଜ୍ଞାନର ସବୁ ବିଭାଗ
soc: ସମାଜ ଓ ସଂସ୍କୃତିକୁ ନେଇ ବିଭିନ୍ନ ବିଷୟ
talk: ତର୍କ ବିତର୍କ
biz: ବ୍ୟବସାୟ

କିଛି ବିଶେଷ ସମ୍ବାଦମଞ୍ଚ ହେଉଛନ୍ତି:

| | |
|---|---|
| clari.news.briefs | ନିୟମିତ ତାଜା ଖବର |
| rec.arts.movies | ସିନେମା ଜଗତ |
| rec.food.recipes | ରାନ୍ଧଣା |
| rec.crafts.textiles | ସିଲେଇ ଓ ବୁଣାକାମ |
| rec.games.misc | ସବୁ ପ୍ରକାରର ଖେଳର ଚର୍ଚ୍ଚା |
| rec.puzzles | ମଜାଦାର ଗୋଲକଧନ୍ଦା |
| rec.travel | ଭ୍ରମଣ ସୁବିଧା ଓ ପରାମର୍ଶ |
| misc.fitness | ବ୍ୟାୟାମ ବିଷୟରେ ଖବର ଓ ପରାମର୍ଶ |
| misc.education | ଶିକ୍ଷା, ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କ କଥା |
| misc.kids | ପିଲା ଓ ତାଙ୍କ ପାଳନ |
| misc.writing | ଲେଖା ଓ ଲେଖକ ବିଷୟରେ ଆଲୋଚନା |

**ବିକଳ୍ପ ଦଳ (alt:)**

୧୯୮୦ ମସିହାରେ ଜନ୍ ଗିଲ୍‌ମୋରଙ୍କ ଦ୍ୱାରା ଆରମ୍ଭ ହୋଇଥିବା ବିକଳ୍ପ ଦଳ ବ୍ୟବସ୍ଥାରେ ଯେ କେହି ଯେ କୌଣସି ବିଷୟରେ ଗୋଟିଏ ସନ୍ଦେଶଦଳ ଗଢ଼ିପାରିବ। ଏହାର ମୁଖ୍ୟ ସୁବିଧା ହେଉଛି ଏହା ଯେ ଅଳ୍ପ ଆଲୋଚକ ଥିଲେ ବି ଏହି ବିକଳ୍ପ ବ୍ୟବସ୍ଥାରେ ଗୋଟିଏ ସନ୍ଦେଶଦଳ ଗଢ଼ିହେବ। ଉଦାହରଣ ସ୍ୱରୂପ, ଓଡ଼ିଶାର ବାତ୍ୟା ବିଷୟରେ alt:current-events.orissa-cyclone ନାମରେ ଗୋଟିଏ ସନ୍ଦେଶଦଳ ଗଢ଼ି ବାତ୍ୟା ବିଷୟରେ ଓ କ୍ଷତିଗ୍ରସ୍ତ ଲୋକମାନଙ୍କୁ ସାହାଯ୍ୟ କରିବାର ବାଟ ଉପରେ ଆଲୋଚନା କରାଯାଇପାରିବ।

ୟୁଜନେଟ ସମ୍ବାଦମଞ୍ଚ ସହିତ ସଂଯୋଗ ସ୍ଥାପନ କରିବା ପାଇଁ ଅନେକ ପ୍ରକାରର *ନିଉଜରିଡର* (ସମ୍ବାଦ ପାଠକ) କାରିକା ରହିଛି। ସମ୍ବାଦ ପାଠକ କାରିକାଗୁଡ଼ିକ ତଳର କାମ ସହିତ ଆଉ କିଛି ଅଧିକ କାମ ମଧ୍ୟ କରିଥା'ନ୍ତି।

* ମିଳୁଥିବା ସମ୍ବାଦମଞ୍ଚ ସବୁର ସୂଚନା ଦେବା,
* କୌଣସି ସମ୍ବାଦମଞ୍ଚର ସଦସ୍ୟ ହେବାରେ ସାହାଯ୍ୟ କରିବା,
* ସମ୍ବାଦମଞ୍ଚର ଲେଖାଗୁଡ଼ିକୁ ଉଦ୍ଧାରକରି ତୁମର କମ୍ପ୍ୟୁଟରରେ ଦେଖାଇବା,
* ଲେଖାଗୁଡ଼ିକୁ ସଜାଇ ରଖିବା,
* ସମ୍ବାଦମଞ୍ଚରେ ଆଲୋଚନା ପାଇଁ ତୁମର ଲେଖାକୁ ପଠାଇବା,

ସମ୍ବାଦ ପାଠକ କାରିକା ଅଲଗା ମିଳିପାରେ କିମ୍ବା ୱେବ ଖୋଜାଳୀ (ବ୍ରାଉଜର୍) ସହିତ ମିଶିକରି ଆସିଥାଏ। ନେଟସ୍କେପ କମ୍ୟୁନିକେଟର ସହିତ ଆସୁଥିବା ସମ୍ବାଦ ପାଠକ ଏହାର ଗୋଟିଏ ଉଦାହରଣ।

କୌଣସି ସମ୍ବାଦମଞ୍ଚ ଆଲୋଚନାରେ ଭାଗନେବା ଆଗରୁ ତଳର କଥାଗୁଡ଼ିକ ବିଷୟରେ ତୁମକୁ ସାବଧାନ ରହିବାକୁ ହେବ।

* ସେହି ସମ୍ବାଦମଞ୍ଚ ବିଷୟରେ ଅଧିକ ଜାଣିବାପାଇଁ ତାଙ୍କର ସାଧାରଣ ପ୍ରଶ୍ନୋତ୍ତରୀ (ଏଫ.ଏ.କ୍ୟୁ. – ଫ୍ରିକୁଏଣ୍ଟଲି ଆସ୍କଡ୍ କ୍ୱେଶ୍ଚିନସ୍ ବା ବାରମ୍ବାର ପଚରାଯାଉଥିବା ପ୍ରଶ୍ନ) ଫାଇଲଟି ପଢ଼ିନିଅ। ପ୍ରାୟ ସବୁ ଦଳ ଏଭଳି ପ୍ରଶ୍ନୋତ୍ତରୀ ଫାଇଲ ରଖିଥା'ନ୍ତି।
* ଖବରଦଳର ଆଭିମୁଖ୍ୟ ଓ ନିୟମାବଳୀ ଆଦିର କୌଣସି ଫାଇଲ ରହିଥିଲେ, ସନ୍ଦେଶ ପଠାଇବା ପୂର୍ବରୁ ଏହାକୁ ପଢ଼।
* ଆଲୋଚନା ଧାରରେ ଆଗରୁ ଆସିଥିବା ସନ୍ଦେଶରୁ ବେଶ୍ କିଛି ପଢ଼ିବାପରେ ନିଜର ମତଥିବା ସନ୍ଦେଶ ପଠାଅ। ଏପରି କଲେ ଅନ୍ୟ ଆଲୋଚକମାନେ ଖୁସୀହେବେ ଯେ ଆଗର ମତ ବିନିମୟ ସହିତ ତୁମେ ପରିଚିତ ହେବାର ଚେଷ୍ଟାକରିଛ।

*ଟେଲନେଟ*

ମନେକର ତୁମେ ଆମେରିକାର ଏକ ବିଶ୍ୱବିଦ୍ୟାଳୟରେ ପଢୁଛ ଓ ବର୍ତ୍ତମାନ ଭାରତରେ ଛୁଟି କଟାଉଛ। କିନ୍ତୁ ଖରାଛୁଟି ପାଇଁ ତୁମକୁ ଦିଆଯାଇଥିବା କାମଟି ଅଧାହୋଇରହିଛି। ତାହାକୁ ସାରିବାପାଇଁ ତୁମର ବିଶ୍ୱବିଦ୍ୟାଳୟର କମ୍ପ୍ୟୁଟରରେ କିଛି କାମ କରିବା ଦରକାର ଅଛି। ଏହା କରିବା ସମ୍ଭବ କି? ହଁ, ନିଶ୍ଚୟ ସମ୍ଭବ। ଇଣ୍ଟରନେଟରେ ଟେଲନେଟ ନାମରେ ଏକ କାରିକା ଅଛି ଯାହା ଆମକୁ ଅନ୍ୟ କେଉଁ ଦୂର ଜାଗାରେ ଥିବା କୌଣସି କମ୍ପ୍ୟୁଟର ସହିତ ସଂଯୁକ୍ତ କରିପାରେ। ଏହା ସାହାଯ୍ୟରେ ସେହି ଦୂର କମ୍ପୁଟରଟି ଆମ ହାତପାହାନ୍ତାରେ ଥିବାଭଳି ଆମେ କାମ କରିପାରେ। ଅବଶ୍ୟ, ଟେଲନେଟ କରିବାପାଇଁ ସେହି କମ୍ପ୍ୟୁଟରରେ କାମ କରିବା ପାଇଁ ତୁମର ଅନୁମତି ଥିବା ଦରକାର ଏବଂ ତାହାପାଇଁ ସଠିକ ସଂଯୋଗ (ଲଗ୍ ଇନ) ନାମ ଓ ପ୍ରବେଶ ସଙ୍କେତ (ପାସୱର୍ଡ) ତୁମକୁ ଜଣାଥିବା ଦରକାର।

ଉପରେ ବର୍ଣ୍ଣିତ ବିଶେଷ ପରିସ୍ଥିତି ଛଡ଼ା ପୃଥିବୀସାରା ଅନେକ କମ୍ପ୍ୟୁଟର ରହିଛି ଯେଉଁଥିପାଇଁ ସୀମିତ ସଂଯୋଗର ଅନୁମତି ମିଳିପାରେ। ଜଣେ କେହି ଚାହିଁଲେ ଯେକୌଣସି ସ୍ଥାନରୁ ଏଭଳି କମ୍ପ୍ୟୁଟର ସହିତ ସୀମିତ ଭାବରେ ସଂଯୁକ୍ତ ହୋଇପାରିବ ଏବଂ ସେହି କମ୍ପ୍ୟୁଟରରେ ଥିବା ସକ୍ରିୟ (ଅନ୍‌ଲାଇନ) ଡେଟାବେସ୍, ଲାଇବ୍ରେରୀ କ୍ୟାଟଲଗ ଓ ଆଳାପ (ଚାଟ) ସେବା ଆଦିରେ କିଛି ନିର୍ଦ୍ଦିଷ୍ଟ କାମ କରିପାରିବ। କୌଣସି

କମ୍ପ୍ୟୁଟର ସହିତ ଟେଲନେଟ କରିବା ପାଇଁ ତୁମକୁ ତାହାର ଠିକଣା ଓ ସଂଯୋଗ ନାମ ଜାଣିବାକୁ ହେବ। ସେହି ଠିକଣାରେ କିଛି ଶବ୍ଦ (locis.loc.gov) ବା ସଂଖ୍ୟା (୧୪୦.୧୪୭.୨୫୪.୩) ରହିପାରେ। ଗୋଟିଏ ୱିଣ୍ଡୋରେ ଟେଲନେଟ କରିବାପାଇଁ ଚାହିଁଲେ ଟେଲନେଟ ସଙ୍କେତ ଚିତ୍ରରେ ମାଉସ୍ ବୋତାମ ଦବାଅ। ବାହାରୁଥିବା ମେନୁରେ ସଂଯୋଗ (କନେକ୍ଟ) ନିର୍ଦ୍ଦେଶ ବାଛିକରି ଟେଲନେଟ ଠିକଣା ଭରିଦିଅ।

ବିଭିନ୍ନ ଟେଲନେଟ ୱେବସ୍ଥଳୀ ଖୋଜିବାପାଇଁ ବର୍କଲି ବିଶ୍ୱବିଦ୍ୟାଳୟର ପିଟର ଷ୍କଟ ଗଢ଼ିଥିବା ହାଇଟେଲନେଟ କାମରେ ଲଗାଯାଇପାରେ। ହାଇଟେଲନେଟ ହେଉଛି ଟେଲନେଟ ୱେବସ୍ଥଳୀଗୁଡ଼ିକର ଏକ ଡାଟାବେସ। ଟେଲନେଟ ଜରିଆରେ ମିଳିପାରୁଥିବା ଲାଇବ୍ରେରୀ, ବୁଲେଟିନ୍‌ବୋର୍ଡ ସେବା (ବିବିଏସ୍), ଫ୍ରିନେଟ, ଗୋଫର୍ସ ଏବଂ ଅନ୍ୟ କେତେ ସାଧନ ଆଦିର ଠିକଣା, ସଂଯୋଗ (ଲଗ୍ଇନ) ନାମ ଓ ପ୍ରବେଶ ସଙ୍କେତ (ପାସୱର୍ଡ) ଓ ଅନ୍ୟ ସବୁ ସୂଚନା ହାଇଟେଲନେଟରେ ରହିଥାଏ।

### *ଏଫଟିପି (FTP)*

ଇଣ୍ଟରନେଟର ଉପାଦେୟତା ବିଷୟରେ କଥାହେଲାବେଳେ ଆମେ ଆଲୋଚନା କରିଥିଲେ ଯେ ସେଥିରେ ବିପୁଳ ପରିମାଣର ସୂଚନା ରହିଥାଏ। କିନ୍ତୁ ପ୍ରଶ୍ନ ଉଠୁଛି ଯେ ଆମେ ସେହି ସବୁ ତଥ୍ୟକୁ ଖୋଜି ବାହାର କରିବା କେମିତି? ଆମେ ଦେଖିଛେ ଯେ ଇ-ଡାକ ଜରିଆରେ କିଛି ପରିମାଣର ସୂଚନା ବିନିମୟ ହୋଇପାରିବ। କିନ୍ତୁ ସେଥିପାଇଁ ଜଣେ କେହି ତଥ୍ୟକୁ ପଠାଇବା ଦରକାର। ଆମେ ଦେଖିଥିଲେ ଯେ ବିଶ୍ୱବ୍ୟାପୀ ୱେବରେ ବିଭିନ୍ନ ୱେବସ୍ଥଳୀକୁ ଗଲେ ଅନେକ ସୂଚନା ମିଳିପାରିବ। କିନ୍ତୁ ତୁମେ ଦେଖିବ ଯେ ୱେବସ୍ଥଳୀଗୁଡ଼ିକର ସୂଚନା ମୁଖ୍ୟତଃ ବର୍ତ୍ତମାନ ସମୟର ଏବଂ ନିର୍ଦ୍ଦିଷ୍ଟ ଅନୁଷ୍ଠାନ ବା ଜିନିଷ ସମ୍ପର୍କିତ। ଆହୁରି ମଧ୍ୟ ଏହି ୱେବସ୍ଥଳୀ ଜରିଆରେ ବଡ଼ ପରିମାଣର ତଥ୍ୟ ଉଦ୍ଧାରକରିବା (ଡାଉନଲୋଡ) ସମ୍ଭବ ନୁହେଁ। ବର୍ତ୍ତମାନ ସେକ୍ସପିଅରଙ୍କର ସମସ୍ତ ଲେଖା ଯେ ସାଂଖ୍ୟିକ ରୂପରେ ଇଣ୍ଟରନେଟରେ ରହିଛି ତାହା ତୁମେ ଜାଣିଛ



ftp.microsoft.com

କି? ଯଦି ଦରକାର ପଡ଼େ, ଆମେ ସେଗୁଡ଼ିକୁ ବାହାରକରି ଆଣିବା କିପରି? ଆମେ ଦେଖିଛେ ଯେ ବିଶ୍ୱବ୍ୟାପୀ ୱେବ ମାତ୍ର ଅଳ୍ପଦିନର କଥା। ତେଣୁ ତାହା ପୂର୍ବରୁ ସୂଚନା ଉଦ୍ଧାର ପାଇଁ କେଉଁ ମାଧ୍ୟମ କାମଦେଉଥିଲା?

ଉପରର ସମସ୍ତ ପ୍ରଶ୍ନର ଉତ୍ତର ହେଉଛି ଏଫ୍.ଟି.ପି. (FTP)। ଏହାର ପୁରା ନାଁ ହେଉଛି ଫାଇଲ ପ୍ରେରଣ ରୀତି (File Transfer protocol)। ଏହି ସୁବିଧା ବ୍ୟବହାର କଲେ ଇଣ୍ଟରନେଟ ସହିତ ସଂଯୁକ୍ତ ବିଭିନ୍ନ କମ୍ପ୍ୟୁଟର ଦେହରୁ ଆମେ ବେଶ୍ ପରିମାଣର ତଥ୍ୟ ଉଦ୍ଧାର କରିପାରିବା। ୱେବସ୍ଥଳୀ ଭଳି ଆମକୁ ଏଫଟିପି ସ୍ଥଳୀଗୁଡ଼ିକର ଠିକଣା ଜାଣିବାକୁ ହେବ। ଏହାପରେ ଗୋଟିଏ ଏଫଟିପି କାରିକା ବ୍ୟବହାରକରି ଆମେ ପ୍ରତ୍ୟେକ ସ୍ଥଳୀରେ କ'ଣ ରହିଛି ତାହା ଜାଣିପାରିବା ଏବଂ ଦରକାରୀ ତଥ୍ୟକୁ ବାହାର କରିଆଣି ପାରିବା। ଜାଣିଲେ ଆଶ୍ଚର୍ଯ୍ୟ ଲାଗିପାରେ ଯେ ପୃଥିବୀ ସାରା ବିଭିନ୍ନ ଏଫଟିପି ସ୍ଥଳୀରେ ହଜାର ହଜାର ମାଗଣା କାରିକା, ବହି, ସାମଗ୍ରୀ, ଖେଳ, ଛବି, ଧ୍ୱନି, ମଲ୍ଟିମିଡିଆ, ପାଠ୍ୟକ୍ରମ, ତଥ୍ୟ ଓ ଅନ୍ୟ କେତେ ସୂଚନା ରହିଛି। ଅନେକ ସରକାରୀ ସଂସ୍ଥା, ବିଶ୍ୱବିଦ୍ୟାଳୟ ଏବଂ ବହୁଦେଶୀୟ କମ୍ପାନୀମାନେ ସାଧାରଣ ଜନତାଙ୍କୁ ଏହି ଫାଇଲଗୁଡିକୁ ମାଗଣାରେ ଯୋଗାଇ ଦେଉଛନ୍ତି।

ftp://ftp.loc.gov (ଲାଇବ୍ରେରୀ ଅଫ୍ କଂଗ୍ରେସ), ftp://ftp.microsoft.com (ମାଇକ୍ରୋସଫ୍ଟ କର୍ପୋରେସନ), ftp://ftp.metalab.unc.edu (ସନସାଇଟ ସାଇଟ), ftp://wuarchive.wustl.edu (ୱାଶିଂଟନ ବିଶ୍ୱବିଦ୍ୟାଳୟ) ଆଦି ହେଉଛି କେତୋଟି ଜନପ୍ରିୟ ଏଫଟିପି ସ୍ଥଳୀ। ଅନେକ ଜନପ୍ରିୟ ସ୍ଥଳୀରେ ଥିବା ସୂଚନାର ନକଲ ଯୋଗାଇ ଦେବାପାଇଁ ଆଉ କେତେ ସ୍ଥଳୀ ମଧ୍ୟ ରହିଛି। ଏହି ସ୍ଥଳୀଗୁଡ଼ିକୁ 'ପ୍ରତିଫଳକ ସ୍ଥଳୀ' ବା *ମିରର ସାଇଟ* କୁହାଯାଏ। ତଥ୍ୟ ଉଦ୍ଧାର ପାଇଁ ଏଗୁଡ଼ିକ ବିକଳ୍ପ ବାଟ ଯୋଗାଇକରି ମୂଳ ସ୍ଥଳୀରେ ଗହଳୀ କମାଇଦିଅନ୍ତି।

କୌଣସି ଏଫଟିପି ସ୍ଥଳୀ ସହିତ ସଂଯୋଗ ସ୍ଥାପନ କଲାବେଳେ ବ୍ୟବହାରକାରୀ ନାମ ଜାଗାରେ ତୁମେ କେବଳ ଅଜଣା ବା *ଏନୋନିମସ* ଏବଂ ପ୍ରବେଶ ସଂକେତ ଜାଗାରେ ତୁମର ଇ-ଡାକ ଠିକଣା ଲେଖିପାର। ଏହାକୁ ଏନୋନିମସ୍ ଏଫଟିପି କୁହାଯାଏ ଏବଂ ଏହା ସୂଚନା ଉଦ୍ଧାର କରିବାପାଇଁ ଗୋଟିଏ ବେଶ୍ ଜନପ୍ରିୟ ଧାରା। ଏହି କାମପାଇଁ ୱିଣ୍ଡୋଜ୍ ଆଧାରିତ ଡବ୍ଲ୍ୟୁଏସ୍ ଏଫଟିପି (WS_FTP for Windows) ହେଉଛି ଗୋଟିଏ ଲୋକପ୍ରିୟ ଏଫଟିପି କାରିକା। http://www.snoopie.com/ ସ୍ଥଳୀରେ ଥିବା ସ୍ନୁପି ଭଳି କିଛି ସନ୍ଧାନୀ କଳ (ସର୍ଚ୍ଚ ଇଞ୍ଜିନ) ଜରିଆରେ ମଧ୍ୟ ତୁମେ ଏଫଟିପି ଫାଇଲ ଉଦ୍ଧାର କରିପାରିବ। ଏହି ବିକଳ୍ପ ସବୁଠାରୁ ସହଜ, କାରଣ ଏଥିରେ ତୁମକୁ ଏଫଟିପି କାରିକାର ନିର୍ଦ୍ଦେଶଗୁଡ଼ିକ ଜାଣିବାର ଆବଶ୍ୟକତା ନାହିଁ।

ଏଫଟିପି କାରିକା ବ୍ୟବହାର କରି କୌଣସି ଫାଇଲ ଉଦ୍ଧାର କରିବାକୁ ହେଲେ ସେହି ଫାଇଲର ପ୍ରକାର ଅନୁସାରେ ତୁମକୁ ଉଦ୍ଧାରର ଧାରା ଠିକ କରିବାକୁ ହେବ। ଏହି କାମ ପାଇଁ ଏଫଟିପିରେ ସାଧାରଣ ଭାବରେ ଦୁଇଟି ଧାରା ରହିଛି – *ବାଇନାରି* (ଛବି ନାମରେ ମଧ୍ୟ ଜଣା) ଓ *ଆସ୍କି* (ASCII)। ଆସ୍କି ଧାରାଟି ସାଧାରଣତଃ ପାଠ୍ୟ ବା ଟେକ୍ସଟ ଫାଇଲ ଉଦ୍ଧାରପାଇଁ ବ୍ୟବହୃତ ହୁଏ। ଚଳନକ୍ଷମ (*ଏକ୍ଜିକ୍ୟୁଟେବଲ୍*) କାରିକା, ଛବି ଓ ଧ୍ୱନି ଫାଇଲ ଭଳି ସଂକଳିତ ତଥ୍ୟ ଫାଇଲ ନେବାଆଣିବାରେ ବାଇନାରି ଧାରା କାମରେ ଲାଗେ। ଏବେ ଅବଶ୍ୟ ତୁମକୁ ଏହି ପ୍ରଭେଦ ଆଉ ଉଲ୍ଲେଖ କରିବାକୁ ପଡ଼ିବ ନାହିଁ, କାରଣ ଆଜିର ଉନ୍ନତ ଏଫଟିପି କାରିକାଗୁଡ଼ିକ ଫାଇଲର ପ୍ରକାର ଜାଣିପାରୁଛନ୍ତି ଓ ଆପେ ଆପେ ଉପଯୁକ୍ତ ଧାରା ବାଛିନେଉଛନ୍ତି।

ଏଫଟିପି ପ୍ରେରଣ ପାଇଁ ଅପେକ୍ଷା କରିବାକୁ ଯେଉଁମାନଙ୍କର ସମୟ ନାହିଁ ବା ଯାହା ପାଖରେ ଏଥିପାଇଁ ଉପଯୁକ୍ତ କାରିକା ନାହିଁ, ସେମାନେ ଅନୁରୋଧ କରିପାରିବେ ଯେ ଇ-ଡାକ ଜରିଆରେ ଫାଇଲଗୁଡ଼ିକ ତାଙ୍କ ପାଖକୁ ପଠାଯାଉ। ଅନେକଗୁଡ଼ିଏ କମ୍ପ୍ୟୁଟର ଏଫଟିପି ଡାକ ସେବକ ଭାବରେ କାମ

କରିଥାନ୍ତି । ଏଫଟିପି ପ୍ରୟୋଗ କାରିକା ପାଇଁ ଏଭଳି ସେବକ ହେଉଛି ଗୋଟିଏ ପ୍ରବେଶ ଦ୍ୱାର । କୌଣସି ଏଫଟିପି ଫାଇଲ ଆଣିବାପାଇଁ ତୁମେ ଏହି ଏଫଟିପି ଡାକ ସେବକ ପାଖକୁ ତୁମର ଇ-ଡାକ ଅନୁରୋଧ ପଠାଇଲେ ତାହା ସେ ଫାଇଲକୁ ଉଦ୍ଧାର କରି ତୁମ ପାଖକୁ ଇ-ଡାକରେ ପଠାଇଦିଏ ।

ଏଫଟିପିର ସାଧାରଣ ବ୍ୟବହାର ହେଉଛି ଗୋଟିଏ ସର୍ବସାଧାରଣ ସେବକରୁ ଫାଇଲ ଉଦ୍ଧାର କରିବା । କିନ୍ତୁ ତାହାର ଓଲଟା କାମ ମଧ୍ୟ ଏଥିରେ ତୁମେ କରିପାରିବ ଏବଂ ତାହା ସାହାଯ୍ୟରେ ତୁମ କମ୍ପ୍ୟୁଟରରୁ କୌଣସି ଏଫଟିପି ସେବକକୁ ଫାଇଲ ପଠାଇ *(ଅପ୍‌ଲୋଡ୍)* ପାରିବ । ଏଥିପାଇଁ ସେହି ସେବକ ପକ୍ଷରୁ ତୁମକୁ ଉପଯୁକ୍ତ ଅନୁମତି ମିଳିଥିବା ନିହାତି ଦରକାର । ତୁମେ ତୁମର ଫାଇଲଗୁଡ଼ିକୁ ଆସୁଥିବା (ଇନ୍‌କମିଙ୍ଗ) ନାମକ ଡାଇରେକ୍‌ଟୋରିରେ ରଖିପାରିବ । ଅନେକ କ୍ଷେତ୍ରରେ ଏଫଟିପି ସେବକରେ ତୁମର ଫାଇଲ ରଖିବାକୁ ହେଲେ ତୁମକୁ ସଂଯୋଗ ନାମ ଓ ପ୍ରବେଶ ସଙ୍କେତ ସହିତ ଗୋଟିଏ ବ୍ୟକ୍ତିଗତ ଏକାଉଣ୍ଟ ରଖିବାକୁ ପଡ଼ିଥାଏ ।

### *ଆର୍ଚ୍ଚି (Archie) – ଏଫଟିପିରେ କିଛି ଖୋଜିବାପାଇଁ କାରିକା*

ଏଫଟିପିରେ କେଉଁ ଫାଇଲ ସବୁ ରହିଛି, କେଉଁଗୁଡ଼ିକ ଆମପାଇଁ ଦରକାରୀ ଓ ସେଗୁଡ଼ିକ କେଉଁଠାରେ ରହିଛି ଏହା ଜାଣିବା ହେଉଛି ଏଫଟିପିର କିଛି ସମସ୍ୟା । ଇଣ୍ଟରନେଟରେ ସୂଚନାର ତାଲିକା ରଖିବାପାଇଁ କୌଣସି କେନ୍ଦ୍ରୀୟ ବ୍ୟବସ୍ଥା ନାହିଁ । ତେଣୁ ସେଥିରେ କିଛି ଖୋଜିବା ପାଇଁ **ଆର୍ଚ୍ଚି** ଓ **ଭେରୋନିକା** ଭଳି ସନ୍ଧାନୀ କାରିକା ଉଦ୍ଭାବିତ ହୋଇଛି ।

କହିବାକୁଗଲେ ଆର୍ଚ୍ଚି ଏଫଟିପି ସ୍ଥଳୀଗୁଡ଼ିକର ଗୋଟିଏ ତାଲିକା ବା କ୍ୟାଟଲଗ ଭଳି କାମକରେ । ଏହି କାରିକା ନିଜର ମୁଖ୍ୟ ତାଲିକାରେ ଥିବା ସବୁ ଇଣ୍ଟରନେଟ ଏଫଟିପି ସ୍ଥଳୀକୁ ଖୋଜିଥାଏ ଏବଂ ପ୍ରତି ସ୍ଥଳୀର ଫାଇଲ ନାମଗୁଡ଼ିକୁ ଗୋଟିଏ କେନ୍ଦ୍ରୀୟ ତଥ୍ୟାଧାରରେ ସାଇତି ରଖେ । ବ୍ୟବହାରକାରୀମାନେ ଏହି ତଥ୍ୟାଧାରରେ ଖୋଜିବା କାମ କରିପାରନ୍ତି । ତୁମେ ଯେତେବେଳେ ଗୋଟିଏ ଆର୍ଚ୍ଚି ସ୍ଥଳୀ ସହିତ ସଂଯୋଗ ସ୍ଥାପନା କର ଏବଂ ଖୋଜିବା ପାଇଁ କିଛି ବିଷୟର ବର୍ଣ୍ଣନା ଯୋଗାଅ, ଆର୍ଚ୍ଚି ନିଜର ତଥ୍ୟାଧାର ଭିତରେ ଖୋଜେ ଏବଂ ତୁମର ବର୍ଣ୍ଣନା ସହିତ ମେଳ ଖାଉଥିବା ସବୁ ଫାଇଲର ତାଲିକା ଦେଖାଏ । ଏ ତାଲିକାରେ ଏଫଟିପି ସ୍ଥଳୀଗୁଡ଼ିକର ସଂଯୋଗ ଠିକଣା ଓ ଫାଇଲ ରହିଥିବା ଡାଇରେକ୍‌ଟୋରିର ନାମ ଥାଏ ।

ୱେବରେ ଅନେକ ଆର୍ଚ୍ଚି ସନ୍ଧାନୀ କଳ ମିଳିଥାଏ । http://www.archie.emnet.co.uk/ ୱେବସ୍ଥଳୀରେ ଏହିଭଳି ସେବାର ଗୋଟିଏ ସଂଗ୍ରହ ରହିଛି । କିଛି ଜନପ୍ରିୟ ଆର୍ଚ୍ଚି ଇଂଜିନ ହେଲେ archie.ans.net (ନିଉୟର୍କ), archie.rutgers.edu (ନିଉ ଜର୍ସି), archie.au (ଅଷ୍ଟ୍ରେଲିଆ) ଏବଂ archie.doc.ic.ac.uk (ଇଂଲଣ୍ଡ) ଇତ୍ୟାଦି ।

### *ଗୋଫର (Gopher)*

ବିଶ୍ୱବ୍ୟାପି ୱେବର ଆଗମନ ପୂର୍ବରୁ ଇଣ୍ଟରନେଟରୁ ତଥ୍ୟ ଉଦ୍ଧାର ପାଇଁ ଏକ ଲୋକପ୍ରିୟ ସହାୟକ (ଟୁଲ) ଥିଲା ଗୋଫର *(ଗୋ ଫର ଇନ୍‌ଫରମେସନ* ବା ସୂଚନା ଖୋଜିଆଣ) । ଏହାର ବିକାଶ ଗୋଲ୍‌ଡେନ ଗୋଫର (ମୂଷା ଭଳି ଏକ ପ୍ରାଣୀ)ର ଘର ମିନିସୋଟା ବିଶ୍ୱବିଦ୍ୟାଳୟଠାରେ ହୋଇଥିଲା । ଇଣ୍ଟରନେଟରେ ଥିବା ମୁଖ୍ୟତଃ ପାଠ୍ୟ-ଆଧାରିତ ଫାଇଲଗୁଡ଼ିକ ପାଇଁ ଗୋଫର ମେନୁ ସହାୟତା ଯୋଗାଇଥାଏ । ଗୋଫର ପରଦାରେ ସଂଖ୍ୟାଚିହ୍ନିତ କାମ ତାଲିକା ବା ମେନୁ ଦେଖାଯାଏ । ସେଥିରୁ ଉପଯୁକ୍ତ କାମକୁ ଦର୍ଶକା ସାହାଯ୍ୟରେ ବାଛିକରି ତୁମକୁ ପ୍ରବେଶ ଚାବି ଦବାଇବାକୁ ହୁଏ । କାମଟିଏ ବାଛିଲା ପରେ ଗୋଫର ଇଣ୍ଟରନେଟର ବିଭିନ୍ନ ଧାରରେ ପଶି ତୁମେ ଚାହିଁଥିବା ସୂଚନା ବାହାରକରେ ଓ ଏହାକୁ ତୁମ କମ୍ପ୍ୟୁଟରକୁ




ଏକ ଗୋଫର ସ୍ଥଳୀ (homeschooling)

ନକଲ କରିଆଣେ। ଗତ କେତେବର୍ଷ ଭିତରେ ୱେବର ବ୍ୟବହାର ଅଧିକ ପସନ୍ଦଯୋଗ୍ୟ ହୋଇପଡ଼ିଛି, ତେଣୁ ଏବେ ଗୋଫର ପ୍ରାୟ ଉଭେଇ ଯାଇଛି। ଯଦି ତୁମେ କୌଣସି ଗୋଫର ସ୍ଥଳୀକୁ ଯିବାକୁ ଚାହୁଁଛ ତେବେ ପ୍ରଥମେ ନିଶ୍ଚିତ କରିନିଅ ଯେ ତାହା ଏବେ ଚାଲୁଛି।

କେତୋଟି ଜନପ୍ରିୟ ଗୋଫର ସ୍ଥଳୀ ହେଲେ gopher://gopher.enews.com (ତାଜା ଖବର), gopher.etext.org (ଇଲେକ୍ଟ୍ରନିକ ପାଠ୍ୟ ଅଭିଲେଖାଗାର), gopher.undp.org (ଜାତିସଂଘ) ଏବଂ gopher.who.ch (ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ) ଇତ୍ୟାଦି।

*ଆଳାପ (ଚାଟ), ପାଳି ଆଳାପ (ଆଇଆରସି), ତତ୍କାଳିକ ସନ୍ଦେଶ (ଇନ୍‌ଷ୍ଟାଣ୍ଟ ମେସେଜିଙ୍ଗ)*

ସାଙ୍ଗମାନଙ୍କ ସହିତ ଗପ କରିବାକୁ ସମସ୍ତଙ୍କୁ ଭଲ ଲାଗେ। ପ୍ରକୃତରେ ଏହା ଆମ ଦେଶର ପ୍ରିୟତମ ଅବସର ବିନୋଦନ। ଯଦି ସ୍କୁଲ ଛୁଟିଥାଏ ଓ ଆମର ଟେଲିଫୋନ ଥାଏ ତାହାହେଲେ ଆମେ ଘଣ୍ଟା ଘଣ୍ଟା ଧରି ଟେଲିଫୋନରେ ଗପିଥାଏ। ଭାବ ତ, ଗୁଡ଼ାଏ ପଇସା ଖର୍ଚ୍ଚ ନକରି ବିଭିନ୍ନ ଦେଶରେ ଥିବା ସାଙ୍ଗମାନଙ୍କ ସହିତ ଗପିପାରିଲେ କେତେ ମଜା ହେବ। ଇଣ୍ଟରନେଟ ଯୋଗୁଁ ଏବେ ଏହା ସମ୍ଭବ ହୋଇପାରୁଛି। ଏହି ଚାଟରେ ତୁମେ ନୂଆ ସାଙ୍ଗ କରିପାରିବ ଏବଂ ସେମାନଙ୍କ ସହିତ କମ୍ପ୍ୟୁଟରରେ ଗପ ବି ଯୋଡ଼ିପାରିବ। କମ୍ପ୍ୟୁଟରରେ ତୁମେ କିଛି କଥା ଟାଇପ କଲେ ତୁମର ସାଙ୍ଗ ତା'ର ଉତ୍ତର ଟାଇପ କରିବ ଏବଂ ତୁମେ ତୁମର ପ୍ରତ୍ୟୁତ୍ତର ଟାଇପ କରି ଆଗକୁ ଗପ ବଢ଼ାଇ ପାରିବ। ସନ୍ଦେଶଗୁଡ଼ିକ ତୁମର ଓ ତୁମ ସାଙ୍ଗର କମ୍ପ୍ୟୁଟର ଭିତରେ ଯିବା ଆସିବା କରିଥାଏ।

ଇଣ୍ଟରନେଟରେ ଅନେକ ୱେବସ୍ଥଳୀ ଏଭଳି ଇଲେକ୍ଟ୍ରନିକ ଆଳାପ ଆସର ଯୋଗାଇଥାନ୍ତି। ତୁମେ

Address http://209.125.84.2:6000/ Go

AIOL All India On-Line™

Get your FREE e-mail

Ecommerce Solution
Dialup Connection
Total Net Solution
Cyber Training

Horoscope
Today's
Tomorrow's
Weekly
Zodiac

End of /MOTD command.
Watching room #lobby
-AiolBOT- Welcome Guest36937, happy chatting :)
-AiolBOT- Welcome Guest36937 to AIOL Chat :)
-AiolBOT- Please Remember to Register with me :)
-AiolBOT- Type /msg AiolBot hello :)

Please enter a nickname to participate

Sounds | Actions

Copyright © 1996-1998 by WebMaster, Inc.

Welcome to AIOL Chat Server.

Enter New Room | Change Room
Enter Another Room | Add New Room
Enter New Name | Change Name

| Home | AIOL-E-MAIL | AutoZone | Chat | Entertainment | Flight Details | Greetings | Horoscope | Internet Services | KidsZone | Matrimonial | News | Religion | Recipe | Tejamail | Travels | Weather

ଏକ ଆଳାପ ଆସର (aiol chat)

ସେହି ଆଳାପ ଆସର ସହିତ ସଂଯୋଗ ଯୋଡ଼ିକରି ସେଠାରେ ଆଗରୁ ସଂଯୁକ୍ତ ଥିବା ଲୋକଙ୍କ ସହିତ ସୂଚନା ବିନିମୟ କରିପାରିବ। ଏହି ବାଟରେ ଗପିଲାବେଳେ ଏବେ ତୁମ ସାଙ୍ଗର କଥାକୁ ସତରେ ଶୁଣିବା ଓ ତାଙ୍କୁ ଦେଖିବା ମଧ୍ୟ ସମ୍ଭବ ହୋଇପାରୁଛି। କେତୋଟି ଲୋକପ୍ରିୟ ଆଳାପ ସ୍ଥଳୀ ହେଉଛି www.yahoo.com, www.talkcity.com, www.aol.com, www.indiatimes.com, www.rediff.com/chat। ଏହି ଆଳାପ ଅନେକ ବ୍ୟାପକ ରୂପ ମଧ୍ୟ ନେଇପାରେ। ଉଦାହରଣ ସ୍ୱରୂପ, ଆମେରିକା ଅନଲାଇନ (www.aol.com) ବିଭିନ୍ନ ବିଷୟରେ ଅନେକ ଆଳାପ ଆସରର ପୃଷ୍ଠପୋଷକତା କରିଥାଏ।

ପାଳି ଆଳାପ ହେଉଛି *ଇଣ୍ଟରନେଟ ରିଲେ ଚାଟ ସର୍ଭିସ* ବା *ଆଇଆରସି* ଯେଉଁଠାରେ ପୃଥିବୀର ଯେକୌଣସି ଜାଗାର ଲୋକମାନେ କମ୍ପ୍ୟୁଟରରେ ଟାଇପ କରି ଶହ ଶହ ଚ୍ୟାନେଲ ବା ଆଭାସୀ କୋଠରୀରେ ନିଜ ନିଜ ଭିତରେ ବାସ୍ତବ ସମୟରେ କଥା ହୋଇପାରିବେ। ଏହି ଚ୍ୟାନେଲଗୁଡ଼ିକ ସାଧାରଣତଃ ଏକ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଆଧାରିତ ହୋଇଥାଏ। ଏଥିରେ ବହୁତ ବିଷୟ ହାଲୁକା ହୋଇଥାଏ, କିନ୍ତୁ କିଛି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ମଧ୍ୟ ଚାଲିଥାଏ। ଆଇଆରସିରେ ସଂଯୁକ୍ତ ହେବାପାଇଁ ତୁମକୁ ଡବଲ୍ୟୁଏସଆଇଆରସି (Wsirc) ଭଳି କିଛି ଆଇଆରସି କାରିକା ତୁମ କମ୍ପ୍ୟୁଟରରେ ବ୍ୟବହାର କରିବାକୁ ହେବ। ଏହି କାରିକା ତୁମକୁ ଏକ ଆଇଆରସି ସେବକ ସହିତ ସଂଯୁକ୍ତ କରିଥାଏ ଓ ଆଇଆରସି ଚ୍ୟାନେଲଗୁଡ଼ିକୁ ଦେଖାଏ। ଚ୍ୟାନେଲ ଗୁଡିକର ନାମ ପୂର୍ବରୁ '#' ଚିହ୍ନ ରହିଥାଏ। ଚ୍ୟାନେଲରେ ଥିବା ପ୍ରତ୍ୟେକ ବ୍ୟକ୍ତିର ଏକ ଡାକ ନାଁ ଥାଏ। ତୁମର ପ୍ରକୃତ ପରିଚୟ ନଜଣାଇ ଖୋଲାଭାବରେ ଗପିବାରେ ଏହା ସାହାଯ୍ୟ କରେ। ଡାକ ନାଁଟି ଯଦି @ ସଙ୍କେତରୁ ଆରମ୍ଭ ହୋଇଥାଏ (ଯଥା @roboman) ତେବେ ଜଣାଯାଏ ଯେ ମଣିଷ ବଦଳରେ କୌଣସି କାରିକା ସେହି ଦଳକୁ ଚଳାଉଛି।

ତତ୍କାଳିକ ସନ୍ଦେଶ ବା *ଇନ୍‌ଷ୍ଟାଣ୍ଟ ମେସେଜିଙ୍ଗ* ହେଉଛି ଆଳାପର ଆଉ ଗୋଟିଏ ରୂପ। ଏହା ଆଇସିକ୍ୟୁ (*ICQ - ଆଇ ସିକ ୟୁ – ମୁଁ ତୁମକୁ ଖୋଜୁଛି*) ନାମରେ ମଧ୍ୟ ବେଶ ଜଣାଶୁଣା। ଏଥିପାଇଁ ତୁମକୁ ଓ ତୁମର ବନ୍ଧୁଙ୍କୁ ଏକ ସ୍ଵତନ୍ତ୍ର ସନ୍ଦେଶ ସରବରାହ କାରିକା ବ୍ୟବହାର କରିବାକୁ ହେବ। ସେଥିରେ ତୁମେ ଗୋଟିଏ ଗୋଟିଏ ଅନନ୍ୟ ଚିହ୍ନଟ ସଂଖ୍ୟା (id) ପାଇବ। ସେହି ସନ୍ଦେଶ ସରବରାହ କାରିକାରେ ତୁମ ସାଙ୍ଗମାନଙ୍କର ଚିହ୍ନଟ ସଂଖ୍ୟାଗୁଡ଼ିକୁ ମିଶାଇ ତୁମେ ଏକ 'ସାଥି ତାଲିକା' (buddy list) ତିଆରି କରିପାରିବ। ଯେତେବେଳେ ବି ତୁମେ ନେଟ ସହିତ ସଂଯୁକ୍ତ ହେବ, ସେହି କାରିକା ତୁମର ବନ୍ଧୁମାନଙ୍କୁ ଜଣାଇଦେବ ଯେ ତୁମେ ସଂଯୁକ୍ତ ଅଛ (ଯଦି ସେମାନେ ସେତେବେଳେ ସଂଯୁକ୍ତ ଥିବେ)। ଠିକ ସେହିଭଳି ତୁମର ସାଥିମାନେ ସଂଯୁକ୍ତ ଥିବାବେଳେ ତୁମେ ମଧ୍ୟ ସେକଥା ଜାଣିପାରିବ। ତାପରେ ତୁମେ ଏକ ସୂଚକ (ହ୍ୟାଣ୍ଡଲ)ରେ ମାଉସ୍ ଦବାଇକରି ଆଳାପ ଆରମ୍ଭ କରିବ। ସବୁଠାରୁ ବିଖ୍ୟାତ ସନ୍ଦେଶ ସରବରାହ କାରିକା ହେଉଛି ଏଓଏଲର ତତ୍କାଳିକ ସନ୍ଦେଶବାହୀ (*ଇନ୍‌ଷ୍ଟାଣ୍ଟ ମେସେଞ୍ଜର*) (www.aol.com/aim/home.html)। ଏଭଳି ଆଉ କିଛି ସନ୍ଦେଶ କାରିକା ହେଉଛନ୍ତି messenger.yahoo.com, messenger.msn.com, www.gooey.com, www.icq.com ଏବଂ www.ichat.com।

*ଏଫଏକ୍ୟୁ, ଆରଏଫସି, ଏଫୱାଇଆଇ (FAQ, RFC, FYI)*

ଗୋଟିଏ ଆଲୋଚନା ଦଳରେ ତୁମେ ଦେଖିବାକୁ ପାଇବ ଯେ ଅନେକ ଲୋକ ସେହି ଏକା ପ୍ରଶ୍ନ ପଚାରନ୍ତି। ଏଭଳି ବାରମ୍ବାର ପଚରା ହେଉଥିବା ପ୍ରଶ୍ନ (ଫ୍ରିକ୍ୱେଣ୍ଟ୍‌ଲି ଆସ୍କଡ୍ କ୍ୱେଶ୍ଚନସ୍ ବା FAQ) ସବୁର ଉତ୍ତର ଦେବାରେ ବେଶ୍ କିଛି ସମୟ ଓ ସଞ୍ଚାର ସୁବିଧା ଖର୍ଚ୍ଚହୁଏ। ଏହି ସମସ୍ୟାର ସମାଧାନ ପାଇଁ ୟୁଜନେଟ ସମ୍ବାଦମଞ୍ଚ ସ୍ଥଳୀଗୁଡ଼ିକ ବାରମ୍ବାର ପଚରା ଯାଉଥିବା ପ୍ରଶ୍ନଗୁଡ଼ିକୁ ସଂଗ୍ରହ କରି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖନ୍ତି। କେହି ନୂଆଲୋକ ନିଜ ତରଫରୁ କୌଣସି ପ୍ରଶ୍ନ ପଚାରିବା ଆଗରୁ ପ୍ରଥମେ ଏହା ଭିତରେ ଖୋଜିବ। ଅନେକ ଏଫଏକ୍ୟୁ ବହୁତ ବ୍ୟାପକ ଓ ତହିଁରେ ଇଣ୍ଟରନେଟ ଓ କମ୍ପ୍ୟୁଟର ବିଷୟରେ ଅନେକ



ତତ୍କାଳିକ ସନ୍ଦେଶ ବା ଇନ୍‌ଷ୍ଟାଣ୍ଟ ମେସେଜିଙ୍ଗ ପରଦା (www.icq.com)




ଏକ ପ୍ରଶ୍ନୋତ୍ତରୀ ପରଦା (www.faq.org)

ସୂଚନା ରହିଥାଏ। ବିଭିନ୍ନ ୟୁଜନେଟ ସମ୍ବାଦମଞ୍ଚର ସଦସ୍ୟ ହେଲେ ତାଙ୍କର ଏଫଏକ୍ୟୁ ମିଳିଥାଏ। *ଇଣ୍ଟରନେଟ ଏଫଏକ୍ୟୁ କନସୋର୍ଟିୟମ* ଦ୍ୱାରା ୱେବ-ଆଧାରିତ ବିଭିନ୍ନ ଏଫଏକ୍ୟୁର ଏକ ତାଲିକା କରାଯାଇଛି ଏବଂ http://www.faqs.org/ ଠିକଣାରେ ତାହା ମିଳିପାରୁଛି।

'ମନ୍ତବ୍ୟ ପାଇଁ ଅନୁରୋଧ' ବା *ରିକ୍ୱେଷ୍ଟ ଫର କମେଣ୍ଟସ* ବ୍ୟବସ୍ଥାକୁ ସଂକ୍ଷେପରେ ଆରଏଫସି କୁହାଯାଏ। ଇଣ୍ଟରନେଟର ଟିକିନିଖି କାମ ଓ ଅଂଶ ସବୁ ବିଷୟରେ ନିର୍ଦ୍ଦିଷ୍ଟ ବୁଝାମଣା ଆଣିବାପାଇଁ ଏହି ଦଲିଲଗୁଡ଼ିକ ତିଆରି କରାଯାଇଥାଏ ଏବଂ ଇଣ୍ଟରନେଟ ଗୋଷ୍ଠୀ ଭିତରେ ବଣ୍ଟାଯାଇଥାଏ। ଏଗୁଡ଼ିକରେ ଉଭୟ ବୈଷୟିକ ଏବଂ ସାଧାରଣ ସୂଚନା ରହିଥାଏ।

'ଏଫଓାଇଆଇ'ର ପୂରା ରୂପ ହେଉଛି *ଫର ୟୋର ଇନ୍‌ଫରମେସନ୍* ବା 'ଆପଣଙ୍କ ଜାଣିବା ପାଇଁ'। ଏହି ଟୀକାଗୁଡ଼ିକ ଆରଏଫସିର ଏକ ଅଂଶ ଏବଂ ନୂଆ ଇଣ୍ଟରନେଟ ବ୍ୟବହାରକାରୀଙ୍କ ପାଇଁ ଉପଯୋଗୀ ସୂଚନା ସେଥିରେ ରହିଥାଏ।

*ଇଣ୍ଟରନେଟ୨ କ'ଣ?*

ନେଟରେ କାମ କଲାବେଳେ (ଇଣ୍ଟରନେଟକୁ ନେଟ ବୋଲି ବି କୁହାଯାଏ) ତୁମେ ଦେଖିବ ଯେ ଏହା ବେଶ୍ ମନ୍ଥର। କେତୋଟି ୱେବସ୍ଥଳୀ ତୁମ କମ୍ପ୍ୟୁଟର ପରଦାରେ ପ୍ରଦର୍ଶିତ ହେବାକୁ ଅନେକ ସମୟ ଲାଗିଥାଏ। ଏହି ବିଳମ୍ବ ଯୋଗୁଁ ବିଶ୍ୱବ୍ୟାପୀ ୱେବକୁ ମଜାରେ ବିଶ୍ୱବ୍ୟାପୀ ୱେଟ ବା ଅପେକ୍ଷା (ୱର୍ଲ୍ଡ ୱାଇଡ୍ ୱେଟ) ବୋଲି କୁହାଯାଏ। ଇଣ୍ଟରନେଟରେ ଯୋଗାଯୋଗର ଗହଳୀ ବହୁତ ହେଉଥିବାରୁ ଏବଂ ବର୍ତ୍ତମାନର ସଞ୍ଚାର ବ୍ୟବସ୍ଥା ଏଥିପାଇଁ ଯଥେଷ୍ଟ ହେଉନଥିବାରୁ ଏହି ପ୍ରକାରର ବିଳମ୍ବ ହୋଇଥାଏ।

ଏହି ସମସ୍ୟାର ସମାଧାନ ପାଇଁ ଆମେରିକାର ପ୍ରାୟ ଶହେପଚାଶଟି ବିଶ୍ୱବିଦ୍ୟାଳୟ ଓ ଗବେଷଣା




ଇଣ୍ଟରନେଟ୨ ପାଇଁ ଚେଷ୍ଟିତ www.ucaid.org

ପ୍ରତିଷ୍ଠାନ ମିଶିକରି ଆଉ ଗୋଟିଏ ଅଧିକ ବେଗବାନ (ସେକେଣ୍ଡ ପ୍ରତି ୨.୪ ଗିଗାବିଟ୍) ନେଟୱର୍କ ଗଢ଼ିବା ପାଇଁ ଚେଷ୍ଟା କରୁଛନ୍ତି। ଏହି ନୂଆ ନେଟୱର୍କ ଯଥେଷ୍ଟ ଅଧିକ ଭାର ବୋହିପାରିବ ଏବଂ ସବୁ ପ୍ରକାରର ମଲ୍ଟିମିଡ଼ିଆ ତଥ୍ୟର ଦାୟିତ୍ୱ ନେଇପାରିବ। ଦୂରଚିକିତ୍ସା, ସଂଖ୍ୟିକ ପାଠାଗାର ଓ ଆଭାସୀ ଗବେଷଣାଗାର ଆଦିର ବିକାଶ ପାଇଁ ଏହି ମହା ରାଜପଥ ବା ସୁପର ହାଇୱେ ବାଟ ସହଜ କରିଦେବ। ୟୁନିଭର୍ସିଟି କର୍ପୋରେସନ ଫର ଏଡ୍‌ଭାନ୍‌ସଡ଼ ଇଣ୍ଟରନେଟ ଡେଭଲପମେଣ୍ଟ (www.ucaid.org) ସଂସ୍ଥାର ଏହି ପ୍ରକଳ୍ପ ଇଣ୍ଟରନେଟ୨ ନାମରେ ଜଣା ଏବଂ ଏହାର ଆରମ୍ଭ ୧୯୯୪ ମସିହାରେ ହୋଇଥିଲା।

### *ଇଣ୍ଟ୍ରାନେଟ କ'ଣ?*

ଗୋଟିଏ ୱେବସ୍ଥଳୀର ଉପାଦେୟତା ଆମେ ଜାଣିସାରିଛେ। ସେଥିରେ ଜଣେ ବହୁତଗୁଡ଼ିଏ ସୂଚନା ରଖିପାରିବ ଏବଂ ଅନ୍ୟମାନେ ଚାହିଁଲେ ତାହାକୁ ପଢ଼ିପାରିବେ ଓ ବ୍ୟବହାର କରିପାରିବେ। ରାଜ୍ୟ ସରକାରଙ୍କ ସଚିବାଳୟ ଭଳି କୌଣସି ବଡ଼ ଅନୁଷ୍ଠାନରେ ଏଭଳି କିଛି ସମ୍ଭବ ହେବ କି? ଯାହା ସାହାଯ୍ୟରେ ସବୁ ବିଭାଗୀୟ କର୍ମଚାରୀ ବିଭିନ୍ନ ପ୍ରାସଙ୍ଗିକ ସୂଚନା ବାଣ୍ଟିପାରିବେ, କିନ୍ତୁ ତାହା ସାଧାରଣ ଜନତାକୁ ମିଳିବନାହିଁ। ଏହି ପ୍ରକାର ଆବଶ୍ୟକତାର ଉତ୍ତର ହେଉଛି ଇଣ୍ଟ୍ରାନେଟ। ଏହା ଏକ ପ୍ରକାରର ଘରୋଇ ଇଣ୍ଟରନେଟ ବ୍ୟବସ୍ଥା। ଇଣ୍ଟରନେଟର ସମସ୍ତ ବୈଷୟିକ କୌଶଳ ଇଣ୍ଟ୍ରାନେଟପାଇଁ କାମକରିଥାଏ। ଟିସିପି/ଆଇପି ଆଧାରିତ ଏଚଟିଟିପି (ଯେଉଁ ରୀତି ବ୍ୟବହାର କରି ୱେବ ବ୍ରାଉଜର ୱେବ ସେବକ ସହିତ କଥାହୁଏ) ଏବଂ ଏସ୍‌ଏମ୍‌ଟିପି ଓ ପିଓପି (ଯାହା ସାହାଯ୍ୟରେ ଇ-ଡାକ କାରିକା ଡାକ ପଠାଏ ଓ ପାଇପାରେ) ଇଣ୍ଟ୍ରାନେଟରେ କାମକରେ। ଅର୍ଥାତ ଇଣ୍ଟ୍ରାନେଟ ଗୋଟିଏ ୱେବ ସେବକ, ୱେବ ବ୍ୟବହାରକାରୀ, ଡାକ ସେବକ ଓ ଡାକ ବ୍ୟବହାରକାରୀ ଚଳାଏ। ଏବେ ଅଧିକରୁ ଅଧିକ ସଂଗଠନ ନିଜର ଇଣ୍ଟ୍ରାନେଟ ସ୍ଥାପନା କରୁଛନ୍ତି। ଫଳରେ କର୍ମଚାରୀଙ୍କ ପାଖକୁ ବିଭିନ୍ନ ସୂଚନା ସହଜରେ ପଠାଯାଇ ପାରୁଛି ଏବଂ କର୍ମଚାରୀମାନେ ନିଜ ନିଜ ଭିତରେ

ତାହା ବାଣ୍ଟି ପାରୁଛନ୍ତି। ଇଣ୍ଟ୍ରାନେଟ୍ ଜରିଆରେ ବିଭିନ୍ନ ନୂଆ ପରିକଳ୍ପନା ବିଷୟରେ ଅନ୍ୟମାନଙ୍କୁ ଜଣାଇ ହେଉଛି, ଭବିଷ୍ୟତ କର୍ମପନ୍ଥା ଉପରେ ଆଲୋଚନା କରିହେଉଛି ଏବଂ ଆଗ୍ରହଜନକ ସମ୍ବାଦ ବାଣ୍ଟି ହେଉଛି। ଅନୁଷ୍ଠାନ ଭିତରେ ଏହା ଯଥେଷ୍ଟ ସ୍ୱଚ୍ଛତା ଏବଂ ପ୍ରକୃତ ଗୋଷ୍ଠୀଭାବ ଆଣିପାରିବ।

*ନେଟିକେଟ*

ଏଟିକେଟ ବା ଶିଷ୍ଟାଚାର କ'ଣ ତାହା ଆମ ସମସ୍ତଙ୍କୁ ଜଣାଅଛି। ଅଭିଧାନ ଅନୁସାରେ ଏହା ହେଉଛି ବୃତ୍ତିଗତ ଆଚରଣ ବା ସାମାଜିକ ଚଳଣି ପାଇଁ ପ୍ରଚଳିତ ରୀତିନୀତି। ସରଳ କଥାରେ, ଅନ୍ୟମାନଙ୍କ ସହିତ ସଂପର୍କ ରଖିଲାବେଳେ ଆମେ କେତୋଟି 'କ'ଣ କରିବା' 'କ'ଣ ନକରିବା' ମାନିଥାଉ। ଉଦାହରଣ ସ୍ୱରୂପ କିଏ ଆମକୁ ସାହାଯ୍ୟ କଲେ ଆମେ ଧନ୍ୟବାଦ ଦେଇଥାଉ। ସାମାଜିକ ରୀତି ଆମକୁ ଅନ୍ୟ ନାଗରିକ ସାଥିମାନଙ୍କ ସହିତ ସହଜ ଭାବରେ ଚଳିବାରେ ସାହାଯ୍ୟ କରିଥାଏ। ଚାଲିଚଳଣ ଜାଗାରୁ ଜାଗା ବଦଳିଥାଏ। ପାଶ୍ଚାତ୍ୟ ଦେଶର ଲୋକମାନେ ହାତ ହଲାଇ କାହାକୁ ସ୍ୱାଗତ କଲାବେଳେ ଆମେ ଭାରତୀୟମାନେ ନମସ୍କାର କରିଥାଉ।

ନେଟରେ ବିଭିନ୍ନ ଅଞ୍ଚଳର ଲକ୍ଷ ଲକ୍ଷ ଲୋକ ପରସ୍ପର ସହିତ ଯୋଗାଯୋଗ ରଖୁଛନ୍ତି। ତେଣୁ ସେଥିରେ ମଧ୍ୟ କିଛି ସ୍ପଷ୍ଟ ରୀତିନୀତି ରହିବା ଦରକାର। ଏହି ରୀତିନୀତିକୁ *ନେଟିକେଟ* (ନେଟ + ଏଟିକେଟ) ବା ବହୁବଚନରେ *ନେଟିକେଟ୍ସ୍* କୁହାଯାଏ। ଜଣେ ନେଟ ବ୍ୟବହାରକାରୀ ଭାବରେ ଆମେ ନିଶ୍ଚିତ ଭାବରେ ଏହି ନେଟିକେଟ ଶିଖିବା ଓ ମାନିବା ଦରକାର। କିଛି ନେଟିକେଟ ତଳେ ଦିଆଯାଇଛି।

୧. ସମ୍ବାଦମଞ୍ଚ ପାଇଁ ଆମର ଉତ୍ତର ପଠାଇବା ପୂର୍ବରୁ ଆମକୁ ନିଶ୍ଚିତ ହେବାକୁ ପଡ଼ିବ ଯେ –
   * ଆମେ ଯାହା କହିବାକୁ ଚାହୁଁଛେ ଆମର ଉତ୍ତର ତାହା ଜଣାଉଛି,
   * ତାହା ସଂକ୍ଷିପ୍ତ ହୋଇଛି ଏବଂ ବନାନ ଓ ବ୍ୟାକରଣ ଅଶୁଦ୍ଧିରୁ ମୁକ୍ତ ଅଟେ,
   * ବିଷୟବସ୍ତୁର ସୂଚନା ଦେଉଥିବା ଏକ ଶିରୋନାମା ସେଥିରେ ରହିଛି।

୨. ଇ–ଡାକ ବ୍ୟବହାର କରିବା ସମୟରେ –
   * ଅଦରକାରୀ ଡାକ, ବିଜ୍ଞାପନ ଅଥବା ମୂଲ୍ୟହୀନ ସଂବାଦ ପଠାଅନାହିଁ। ମୁମୂର୍ଷ ବାଳକ, ମୋଡେମ ଶୁଳ୍କ ବିଷୟରେ ବା ଶୃଙ୍ଖଳ ଡାକ ପଠାଅନାହିଁ।
   * ପୂରା ସନ୍ଦେଶଟି ଇଂରାଜୀ ବଡ଼ ଅକ୍ଷରରେ ଲେଖନାହିଁ।
   * ଭୁଲନାହିଁ ଯେ ଇ–ଡାକ ସବୁବେଳେ ବେଶୀ ରୁକ୍ଷ ଓ ଅରୁଚିକର ମନେହୋଇଥାଏ।
   * କୌଣସି ସନ୍ଦେଶର ଉତ୍ତର ଦେଲାବେଳେ ଯଦି ତୁମେ ମୂଳ ସନ୍ଦେଶର ନକଲ ଅନ୍ତର୍ଭୁକ୍ତ କରିବାକୁ ଚାହୁଁଚ, ତାହାହେଲେ କଟାକଟି କର ଯେତିକି ଦରକାର ମାତ୍ର ସେତିକି ପଠାଅ।
   * ଅଜଣା ଲୋକଙ୍କ ସହିତ ଯୋଗାଯୋଗ କଲାବେଳେ ନିଜ ବିଷୟରେ କିଛି ସୂଚନା ଦେଉଥିବା ଏକ ପରିଚାୟକ ଦସ୍ତଖତ ବ୍ୟବହାର କର।
   * ତୁମ ଲେଖାକୁ ସଂକ୍ଷିପ୍ତ ଓ ଅର୍ଥପୂର୍ଣ୍ଣ କର।
   * ତୁମ ପାଖକୁ ଆସିଥିବା ଇ–ଡାକକୁ ଅନ୍ୟ କାହା ପାଖକୁ ବା ସମ୍ବାଦମଞ୍ଚକୁ ପଠାଇବା ଆଗରୁ ମୂଳ ଲେଖକର ଅନୁମତି ନିଅ।
   * ଥଟ୍ଟାଳିଆ କଥା ଲେଖିଲାବେଳେ ସାବଧାନ ହୁଅ। ପ୍ରାପକ ହୁଏତ ଏହାକୁ ଭୁଲ ବୁଝିପାରନ୍ତି। ତୁମେ ମଜାରେ ଲେଖୁଛ ବୋଲି ଜଣାଇବା ପାଇଁ ସ୍ମାଇଲି ବ୍ୟବହାର କର।

## ପଞ୍ଚମ ଅଧ୍ୟାୟ

# ଇଣ୍ଟରନେଟ୍‌ର ଅନୁଭୂତି

ଆମେ ନେଟ ବିଷୟରେ ବହୁତ କଥା ଜାଣିଲେଣି, ତଥାପି ଗୋଟିଏ ମୌଳିକ କଥା ଆମେ ଏପର୍ଯ୍ୟନ୍ତ ଛୁଇଁନାହେଁ। ତାହା ହେଉଛି – ଇଣ୍ଟରନେଟ ସହିତ ସଂଯୁକ୍ତ ହେବା କିପରି? ସେଥିପାଇଁ କ'ଣ ଜିନିଷ ଓ କୌଶଳ ଦରକାର ତାହା ଏଠାରେ ଶିଖିବା।

*ଇଣ୍ଟରନେଟ ସହିତ ସଂଯୋଗ ସ୍ଥାପନା*

ତୁମେ ଯଦି କୌଣସି ସଂଗଠନ ପାଇଁ କାମ କରୁଛ କିମ୍ବା ସ୍କୁଲରେ ବା କଲେଜରେ ପଢୁଛ ଯାହାର ଇଣ୍ଟରନେଟ ସୁଯୋଗ ଆଗରୁ ରହିଛି ତାହାହେଲେ ଏହି ପ୍ରଶ୍ନ ତୁମପାଇଁ ପ୍ରାସଙ୍ଗିକ ନୁହେଁ। କିନ୍ତୁ ତୁମେ ଯଦି ତୁମ ଘରକୁ ଇଣ୍ଟରନେଟ ସଂଯୋଗ ଆଣିବା ପାଇଁ ଚାହୁଁଛ, ତେବେ ଦେଖିବା ତୁମକୁ କ'ଣ କରିବାକୁ ହେବ।

ଇଣ୍ଟରନେଟ ସଂଯୋଗ ଆଣିବା ପୂର୍ବରୁ ତଳର ଜିନିଷଗୁଡ଼ିକ ଆମର ନିଶ୍ଚିତ ଭାବରେ ଦରକାର।

୧. ଗୋଟିଏ ବ୍ୟକ୍ତିଗତ କମ୍ପ୍ୟୁଟର (୧୬ ମେଗାବାଇଟ ରାମ ଥିବା ପେଣ୍ଟିଅମ ହେଲେ ଭଲ)
୨. ଗୋଟିଏ ଉଚ୍ଚବେଗକ୍ଷମ ମୋଡେମ୍ (୨୮.୮ କେବିପିଏସ୍ ବା ଅଧିକ କ୍ଷମତା)
୩. ଟେଲିଫୋନ୍ ସଂଯୋଗ

ତାହାପରେ ଆମକୁ ଗୋଟିଏ ସେବା ଯୋଗାଣକାରୀ (*ସର୍ଭିସ୍ ପ୍ରୋଭାଇଡର*) ଖୋଜିବାକୁ ପଡିବ ଯିଏ କି ଆମକୁ ଇଣ୍ଟରନେଟ ସଂଯୋଗ ଯୋଗାଇବ। ପ୍ରଥମରେ ଭିଏସ୍‌ଏନ୍‌ଏଲ୍ (ବିଦେଶ ସଂଚାର ନିଗମ ଲିମିଟେଡ୍) ହିଁ ଭାରତରେ ଏକମାତ୍ର ସେବା ଯୋଗାଣକାରୀ ସଂସ୍ଥା ଥିଲା। କିନ୍ତୁ ଭାରତ ସରକାର ଏବେ ଘରୋଇ କମ୍ପାନୀମାନଙ୍କୁ ଇଣ୍ଟରନେଟ ସେବା ଯୋଗାଣକାରୀ ଭାବରେ କାମ କରିବାର ଅନୁମତି ଦେଇଛନ୍ତି। ଉଦାହରଣ ସ୍ୱରୂପ, ସତ୍ୟମ ଇନ୍‌ଫୋୱେ ହେଉଛି ଜାତୀୟ ସ୍ତରରେ ସର୍ବପ୍ରଥମ ସେବା ଯୋଗାଣକାରୀ ବେସରକାରୀ ସଂସ୍ଥା। ପ୍ରତି ସହରରେ ବା ରାଜ୍ୟରେ ଏକାଧିକ ଆଞ୍ଚଳିକ ସେବା ଯୋଗାଣକାରୀ ମଧ୍ୟ ଥାଇପାରନ୍ତି। ଦୂର ସଞ୍ଚାର ବିଭାଗ (ଡିପାର୍ଟମେଣ୍ଟ ଅଫ୍ ଟେଲିକମ୍ୟୁନିକେସନ୍ ବା ଡିଓଟି) ଏବଂ ଏମ୍‌ଟିଏନ୍‌ଏଲ୍ (ମହାନଗର ଟେଲିଫୋନ୍ ନିଗମ ଲିମିଟେଡ) ଭଳି ଅନେକ ସରକାରୀ ସଂସ୍ଥା ମଧ୍ୟ ସେବା ଯୋଗାଣକାରୀ ହୋଇଛନ୍ତି।

ସାଧାରଣତଃ ଜଣେ ଇଣ୍ଟରନେଟ ସେବା ଯୋଗାଣକାରୀ (ଆଇଏସ୍‌ପି) ଇଣ୍ଟରନେଟ ସହିତ ସଂଯୋଗ ପାଇଁ ଆବଶ୍ୟକୀୟ ସଂଯୋଗ ସୁବିଧା ଓ କାରିକା ଯୋଗାଇଥାଏ। ତାହା ସହିତ କିଛି ବୈଷୟିକ ସହାୟତା ମଧ୍ୟ ସେମାନେ ଦେଇଥା'ନ୍ତି। ଅନେକ ଆଇଏସ୍‌ପି ଇ–ଡାକ ଏକାଉଣ୍ଟ, ୱେବପୃଷ୍ଠା ଖୋଲିବାର ସୁବିଧା ଯୋଗାଇବା ସହିତ କମ୍ପାନୀମାନଙ୍କୁ ନେଟରେ ବ୍ୟବସାୟ ଚଳାଇବା ଦିଗରେ ସାହାଯ୍ୟ କରିଥାନ୍ତି।

ଇଣ୍ଟରନେଟ ସଂଯୋଗତା (କନେକ୍‌ଟିଭିଟି) ଘଣ୍ଟା ମାପରେ ଯୋଗାଇ ଦିଆଯାଇଥାଏ ଏବଂ ସେହି

ଅନୁସାରେ ମୂଲ୍ୟ ଦେବାକୁ ପଡ଼ିଥାଏ। ଉଦାହରଣ ସ୍ୱରୂପ, ଡିଓଟି ଗୋଟିଏ ଶହେ ଘଣ୍ଟାର ପ୍ୟାକେଜ୍ ପାଇଁ ୧୫୦୦ଟଙ୍କା ନେଲାବେଳକୁ ୫୦୦ ଘଣ୍ଟା ପାଇଁ ମୂଲ୍ୟ ୬୦୦୦ଟଙ୍କା ରଖିଥାଏ। ତୁମେ ଆବଶ୍ୟକୀୟ ଟଙ୍କା ଦେଲେ ନିର୍ଦ୍ଦିଷ୍ଟ ଘଣ୍ଟା ପାଇଁ ସଂଯୋଗ ପାଇବ। ତାହା ସହିତ ତୁମକୁ ଗୋଟିଏ ସଂଯୋଗ ନାମ ଓ ପ୍ରବେଶ ସଂକେତ ଯୋଗାଇ ଦିଆଯିବ। ତୁମେ *ପ୍ରକ୍ଟି ସର୍ଭର* ବା *ପ୍ରୋକମ୍* ଭଳି କିଛି କାରିକା ବ୍ୟବହାର କରି ଆଇଏସ୍‌ପିର ଟେଲିଫୋନ ନମ୍ବର ଡାଏଲ କରିବ ଏବଂ ଉପଯୁକ୍ତ ଅନୁମୋଦନ ପରେ ସଂଯୁକ୍ତ ହେବ। ଥରେ ସଂଯୁକ୍ତ (ଲଗ୍‌ଡ ଅନ୍) ହେଲାପରେ ଆଇଏସ୍‌ପିର କମ୍ପ୍ୟୁଟର ସେହି ଅଧିବେଶନରେ ତୁମେ କେତେ ଘଣ୍ଟା ପାଇଁ ଇଣ୍ଟରନେଟ ସହିତ ସଂଯୁକ୍ତ ହୋଇଥିଲ ତାହାର ହିସାବ ରଖିବ। ତୁମେ ଯେତେଥର ଚାହିଁବ ସେତେଥର ଯୋଡ଼ିହେବ (ଲଗ୍ ଇନ୍) ଓ ବାହାରି ଆସିବ (ଲଗ୍ ଆଉଟ୍)। କିନ୍ତୁ ଥରେ ତୁମେ କିଣିଥିବା ନିର୍ଦ୍ଦିଷ୍ଟ ସମୟ ପୂରା ହୋଇଗଲେ ତୁମକୁ ଆଉ ଟଙ୍କା ଦେଇ ଅତିରିକ୍ତ ସମୟ କିଣିବାକୁ ହେବ। ପ୍ରକ୍ରିୟାଟି ବାସ୍ତବରେ ସରଳ।

ଯେହେତୁ ବର୍ତ୍ତମାନ ଅନେକ ସଂଖ୍ୟକ ଆଇଏସ୍‌ପିଏସ୍ ରହିଛି, ଦର ଧୀରେ ଧୀରେ କମୁଛି। ପୁଣି ମନେରଖ ଯେ ଇଣ୍ଟରନେଟ ସଂଯୋଗ ବାହାରେ ତୁମକୁ ଟେଲିଫୋନ ଖର୍ଚ୍ଚ ବି ଦେବାକୁ ହେଉଛି। କାରଣ ଯେତେ ସମୟ ଧରି ତୁମେ ନେଟ୍‌ରେ ସଂଯୁକ୍ତ ରହୁଛ ସେହି ସମୟ ପାଇଁ ତୁମକୁ ସ୍ଥାନୀୟ କଲର ମୂଲ୍ୟ ଦେବାକୁ ପଡ଼ିବ। ଉଦାହରଣ ସ୍ୱରୂପ, ଗୋଟିଏ ଘଣ୍ଟାର ଇଣ୍ଟରନେଟ ସର୍ଫିଙ୍ଗ ପାଇଁ ସଂଯୋଗ ଦର ୧୦ଟଙ୍କାରୁ ୧୫ଟଙ୍କା ଭିତରେ ପଡ଼ିଲାବେଳେ ଟେଲିଫୋନ୍ ଖର୍ଚ୍ଚ ପ୍ରାୟ ୨୫ଟଙ୍କା ହେବ। କମ୍ପ୍ୟୁଟର ଓ ବିଜୁଳି ଖର୍ଚ୍ଚ ମିଶାଇଲେ ଘଣ୍ଟା ପ୍ରତି ପ୍ରକୃତ ଖର୍ଚ୍ଚ ହେବ ପ୍ରାୟ ୪୦ଟଙ୍କା। କିନ୍ତୁ ଗୋଟିଏ ସଂଗଠନ ଯିଏକି ଭଡ଼ା ଲାଇନ୍ ଜରିଆରେ ୨୪ ଘଣ୍ଟିଆ ସଂଯୋଗତା ଆଣିଛି ଏବଂ ସେଥିରେ ବହୁତ ଲୋକ ଇଣ୍ଟରନେଟରେ କାମ କରୁଛନ୍ତି, ତେବେ ତାଙ୍କପାଇଁ ଘଣ୍ଟାପ୍ରତି ଖର୍ଚ୍ଚ ବେଶ୍ କମ୍ ହେବ। ଏହା ହୁଏତ ୨ରୁ ୧୦ ଟଙ୍କା ଭିତରେ ହୋଇପାରେ। ମଜାର କଥା ଯେ ଡିସ୍‌ନେଟ ଭଳି ସେବା ଯୋଗାଣକାରୀ ଏବେ ଘଣ୍ଟାକୁ ୫ଟଙ୍କାରେ ୫ବର୍ଷିଆ ସଂଯୋଗ ଯୋଗାଉଛନ୍ତି। ଏଥିରୁ ଜଣାପଡୁଛି ଏହି ଦର କିପରି କମିଚାଲିଛି। ପାଖର ଲେଖାରୁ ଜାଣିହେବ ଏବେ କିପରି ଇଉରୋପର କିଛି କମ୍ପାନୀ ୱେବରେ ବୁଲିବା ପାଇଁ ତୁମକୁ ଟଙ୍କା ଦେବାକୁ ଯାଉଛନ୍ତି।

ତୁମେ ଜାଣିଛ ଯେ ତୁମ ସହରରେ ବର୍ତ୍ତମାନ ବହୁ ସଂଖ୍ୟକ ସାଇବର କାଫେ ଖୋଲୁଛି। ଏହି କାଫେଗୁଡ଼ିକରେ ଗୋଟିଏ ଘଣ୍ଟାର ସାଇବର ସର୍ଫିଙ୍ଗ୍ ପାଇଁ ୧୫ରୁ ୨୦ଟଙ୍କା ନେଉଛନ୍ତି। ତୁମେ ଯଦି ଇଣ୍ଟରନେଟର ବ୍ୟାପକ ବ୍ୟବହାର କରିବାକୁ ଚାହୁଁନାହଁ, ବରଂ କେବେ କେମିତି ସାମୟିକ ଭାବରେ ବ୍ୟବହାର କରିବାକୁ ଚାହୁଁଛ, ତେବେ ସାଇବର କାଫେ ବେଶ୍ ସୁବିଧାଜନକ। ଯଦି ତୁମେ ଆଉ କେଉଁଠାକୁ ଯାଇଛ ଏବଂ ସେଠାରେ ଇଣ୍ଟରନେଟ ସଂଯୋଗ ଚାହିଁଲ, ସେଠାରେ ମଧ୍ୟ ସାଇବର କାଫେ ଖୁବ ଉପଯୋଗୀ।

ବର୍ତ୍ତମାନ ଅନେକ ରାଜ୍ୟ ସରକାର ରାଜ୍ୟସାରା ଇଇଣ୍ଟରନେଟ ଟୁଙ୍ଗି (କିଓସ୍କ) ବସାଇବାର ଯୋଜନା କରୁଛନ୍ତି। ଏଗୁଡ଼ିକ ଇଣ୍ଟରନେଟ ସଂଯୋଗ ଥିବା ସର୍ବସାଧାରଣ ଟେଲିଫୋନ ବୁଥ ଭଳି ହେବ। ଗାଁଗହଳୀରେ ମଧ୍ୟ ଇଣ୍ଟରନେଟ ସଂଯୋଗ ଯୋଗାଇବାରେ ଏହା ସାହାଯ୍ୟ କରିବ। ମହାରାଷ୍ଟ୍ରର ଏକ ଗାଁରେ ଏହାର ପରୀକ୍ଷାମୂଳକ ବ୍ୟବହାର ସମୟରେ ଦେଖାଗଲା ଯେ ଏଭଳି ତିନୋଟି ଟୁଙ୍ଗି ଲୋକଙ୍କୁ ସରକାରୀ ଫର୍ମ ପୂରଣ କରିବାରେ ଏବଂ ବିଭିନ୍ନ ଯୋଜନାର ସୁବିଧା ପାଇବାରେ ସାହାଯ୍ୟ କରିପାରିଲା। ଅନ୍ୟ ଏକ ପରୀକ୍ଷାରେ ଦେଖାଗଲା ଯେ ସହରରେ କାମ କରୁଥିବା ଆତ୍ମୀୟଙ୍କ ସହିତ ଯୋଗାଯୋଗ କରିବାରେ ଭିଡିଓ ଇ-ଡାକ ଗାଁର ନିରକ୍ଷର ଲୋକଙ୍କ ପାଇଁ ବେଶ୍ ଉପାଦେୟ ହେଲା।

ବାସ୍ତବରେ ୱର୍ଲ୍ଡ଼ଟେଲ୍ ନାମକ କମ୍ପାନୀ, ବିଖ୍ୟାତ ସାମ୍ ପିଟ୍ରୋଡ଼ା ଯାହାର ଅଧ୍ୟକ୍ଷ, ଏଭଳି ଇଣ୍ଟରନେଟ ଟୁଙ୍ଗି ରାଜ୍ୟସାରା ବସାଇବା ପାଇଁ ତାମିଲନାଡୁ ସରକାରଙ୍କ ସହିତ ବୁଝାମଣା କରିଛି। ଆହୁରି କେତେ ରାଜ୍ୟ ସରକାର ଏଭଳି କରିବାର ଯୋଜନା ରଖିଛନ୍ତି।

## ବ୍ରାଉଜର ବିଷୟରେ ଅଧିକ

ବ୍ରାଉଜର ବିଷୟରେ ଆମର କିଛି ମୌଳିକ ଧାରଣା ହୋଇ ସାରିଛି। କିନ୍ତୁ ନେଟ ସର୍ଫିଙ୍ଗ କରିବାପାଇଁ ଏହା ହେଉଛି ଆମର ମୁଖ୍ୟ ଅସ୍ତ୍ର। ତେଣୁ ଏହା ବିଷୟରେ ଆମେ ଆଉ କିଛି ଅଧିକ ଜାଣିବା ନିହାତି ଦରକାର। ବିଶେଷ କରି ଏଥିରେ ଥିବା ବିଭିନ୍ନ ପ୍ରକାରର ନିର୍ଦ୍ଦେଶ ବୋତାମ ଏବଂ ତାହା କରିପାରୁଥିବା ବିଭିନ୍ନ ରକମର କାମ ବିଷୟରେ ଆମେ ଏବେ ଅଧିକ ଜାଣିବା।

ଆଗରୁ କୁହାସରିଛି ଯେ ଆମେ ମୁଖ୍ୟତଃ ନେଟସ୍କେପ ନେଭିଗେଟର ବା ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର ବ୍ୟବହାର କରିବା। ତେଣୁ ସେହି ଦୁଇ ବ୍ରାଉଜର ଉପରେ ଆମେ ବିଶେଷ ଧ୍ୟାନଦେବା।

### ନେଟସ୍କେପ ନେଭିଗେଟର ବନାମ ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର

ନେଟସ୍କେପ କମ୍ପାନୀ ହିଁ ବ୍ରାଉଜର ତତ୍ତ୍ୱକୁ ଲୋକପ୍ରିୟ କରିଥିଲା। ବାସ୍ତବରେ, ନେଟସ୍କେପ ନେଭିଗେଟରର ଲୋକପ୍ରିୟତା ଯୋଗୁ ସଫ୍ଟୱେର କ୍ଷେତ୍ରରେ ମାଇକ୍ରୋସଫ୍ଟ କମ୍ପାନୀର ଆଧିପତ୍ୟ ପ୍ରତି ନେଟସ୍କେପ ଏକ ପ୍ରତିଦ୍ୱନ୍ଦୀ ହୋଇଉଠିଲା।

ପ୍ରଥମ ଅବସ୍ଥାରେ ମାଇକ୍ରୋସଫ୍ଟ ଇଣ୍ଟରନେଟ ବିଷୟରେ ବିଶେଷ ଗୁରୁତ୍ୱ ଦେଉନଥିଲା। କିନ୍ତୁ ଇଣ୍ଟରନେଟର ବଢୁଥିବା ଲୋକପ୍ରିୟତାକୁ ବୁଝିବାପରେ ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର ତିଆରି କଲା ଏବଂ ଇଣ୍ଟରନେଟକୁ ଅକ୍ତିଆର କରିବାପାଇଁ ବିଭିନ୍ନ କୌଶଳ ବାହାର କଲା। ଫଳରେ ପ୍ରଥମରେ ସାମାନ୍ୟ ଆଗୁଆ ଥିବା ନେଟସ୍କେପ ନେଭିଗେଟର ଏବଂ ନୂଆହୋଇ ଆସିଥିବା ଇଣ୍ଟରନେଟ ଏକ୍ସପ୍ଲୋରର ଭିତରେ ଏକ ଯୁଦ୍ଧ ଆରମ୍ଭ ହୋଇଗଲା। ଧୀରେ ଧୀରେ ଏହାର ବଜାର ଶକ୍ତି ବ୍ୟବହାର କରି ମାଇକ୍ରୋସଫ୍ଟ ନେଟସ୍କେପଠାରୁ ଆଗେଇ ଗଲା। ପ୍ରକୃତରେ, ମାଇକ୍ରୋସଫ୍ଟର ଏହିସବୁ କୌଶଳ ଯୋଗୁଁ ଆମେରିକାରେ ତାହା ବିରୁଦ୍ଧରେ ଏକ ବିଶ୍ୱାସହାନୀ ମାମଲା ଚାଲୁରହିଛି।

ନେଟସ୍କେପ କମ୍ପାନୀର ଉତ୍ପାଦସମୂହ ନେଟସ୍କେପ କମ୍ୟୁନିକେଟର ଭାବରେ ଜଣା। ସେଥିରେ ରହିଥିବା ବିଭିନ୍ନ ଅଂଶ ହେଉଛି:

- ନେଭିଗେଟର: ୱେବ ବ୍ରାଉଜର
- ମେସେଞ୍ଜର: ଆମେ ଜାଣିଛେ ଗୋଟିଏ ବାର୍ତ୍ତାବହ କିଭଳି ତୁମର ବନ୍ଧୁଙ୍କୁ ଜଣାଇଦିଏ ଯେ ତୁମେ ଇଣ୍ଟରନେଟରେ ସଂଯୁକ୍ତ ରହିଛ ଏବଂ ତାଙ୍କ ସହିତ ଆଳାପ ଆରମ୍ଭ କରାଇଥାଏ।
- କୋଲାବ୍ରା: ଏହା ଆଲୋଚନା ଦଳ ଜରିଆରେ ଚିନ୍ତନ ଓ ସୂଚନା ବିନିମୟ କରିବାରେ ସାହାଯ୍ୟ କରେ। ଜଣେ ଚାହିଁଲେ ନେଟସ୍କେପ କୋଲାବ୍ରା ବ୍ୟବହାର କରି କମ୍ପାନୀ ବିଷୟରେ ସୂଚନା ଓ ବିଜ୍ଞାପନ ସବୁ ପଠାଇପାରିବ। ଏହା ଫଳରେ ଏସବୁ ପାଇଁ ଇ-ଡାକର ବହୁଳ ବ୍ୟବହାରକୁ କମାଇପାରିବ।
- କମ୍ପୋଜର: ଏକ ଏଚଟିଏମଏଲ ସଂପାଦକ ଯାହା ବିଷୟରେ ଆମେ ପରେ ଏହି ବହିରେ ଆଲୋଚନା କରିବା।
- କନ୍‌ଫରେନ୍‌ସ: ଏହା ଦୃଶ୍ୟଶ୍ରାବ୍ୟ ସୁବିଧା ଯୋଗାଇପାରୁଥିବା ଏକ ସମାବେଶ କାରିକା। ଆଳାପ, ହ୍ୱାଇଟ ବୋର୍ଡିଙ୍ଗ ଓ ଫାଇଲ ଟ୍ରାନ୍‌ସଫର ଭଳି ଆହୁରି କେତେ ପ୍ରକାରର ସହଯୋଗ ସୁବିଧା ମଧ୍ୟ ଏହା ଯୋଗାଇଥାଏ।

- ନେଟକାଷ୍ଟର: ଭଲ ଭଲ ଚ୍ୟାନେଲର ସଦସ୍ୟ ହେବାରେ ଏବଂ ସ୍ୱୟଂକ୍ରିୟ ଭାବରେ ନିର୍ଦ୍ଦିଷ୍ଟ ସମୟ ବ୍ୟବଧାନରେ ସେସବୁରୁ ତୁମେ ଚାହୁଁଥିବା ସୂଚନା ସଂଗ୍ରହ କରିବାରେ ଏହା ତୁମକୁ ସାହାଯ୍ୟ କରିଥାଏ। ଫଳରେ ନିଜେ ଲାଗିକରି ସୂଚନା ଖୋଜିବା ଓ ତାହାକୁ ନିଜ କମ୍ପ୍ୟୁଟରକୁ ଉତାରିବା (ଡାଉନଲୋଡ କରିବା) କାମରୁ ତୁମକୁ ମୁକ୍ତି ମିଳିଥାଏ।

  କୌଣସି ୱେବସ୍ଥଳୀରୁ ଆପେ ଆପେ ସୂଚନା ଉତାରିବା ଏବଂ ଇଣ୍ଟରନେଟରେ ସଂଯୁକ୍ତ ନଥିଲାବେଳେ ସେହି ସଂଗୃହିତ ଫାଇଲ ଦେଖିବାର (ଅଫ୍‌ଲାଇନ ବ୍ରାଉଜିଙ୍ଗ) ସୁବିଧା ମଧ୍ୟ ଏହା ଯୋଗାଇଥାଏ। ଏହା ତୁମର ସଂଯୋଗ ଖର୍ଚ୍ଚ ବଞ୍ଚାଇପାରେ।

ଏହାର ବିକଳ୍ପ ମାଇକ୍ରୋସଫ୍‌ଟ ଇଣ୍ଟରନେଟ ଏକ୍ସପ୍ଲୋରରରେ ଆହୁରି କେତେଗୁଡ଼ିଏ ଅଧିକା ଇଣ୍ଟରନେଟ ସମ୍ପର୍କିତ କାରିକା ରହିଥାଏ। ସେହିସବୁ ଅଧିକା ସୁବିଧା ଭିତରୁ ବିଶେଷ ଉପଯୋଗୀତା ରହିଥିବା କେତୋଟି କାରିକା ହେଉଛି:

- ନେଟସୋ ସର୍ଭର (ନେଟ ଦୃଶ୍ୟ ସେବକ): ଏହା ତୁମକୁ ସମକାଳୀନ (ଲାଇଭ) ବା ଆଗରୁ ରେକର୍ଡ କରାଯାଇଥିବା ସଙ୍ଗୀତ ବା ସମ୍ବାଦ ଆଦିର ଧ୍ୱନି ଓ ଚିତ୍ର ସହିତ ପରିବେଷଣରେ ସାହାଯ୍ୟ କରେ।
- ନେଟମିଟିଙ୍ଗ କନଫରେନସିଙ୍ଗ କାରିକା: ଏହାକୁ ଗୋଟିଏ ଧ୍ୱନି କାର୍ଡ, ସ୍ପିକର ଓ ମାଇକ୍ରୋଫୋନ ସହିତ ବ୍ୟବହାର କରି ତୁମେ ଘରଲୋକ ବା ସହକର୍ମୀଙ୍କଠାରୁ ଆରମ୍ଭକରି ସାରା ପୃଥିବୀ ସହିତ କଥା ହୋଇପାରିବ। ଏହା ସହିତ ୱିଣ୍ଡୋଜରେ କାମ କରିପାରୁଥିବା ଭିଡିଓ କ୍ୟାପଚର କାର୍ଡ ବା କ୍ୟାମେରା ଯୋଡ଼ିକରି ତୁମେ ସେମାନଙ୍କୁ ଦେଖି ମଧ୍ୟ ପାରିବ।
- ଆକ୍‌ଟିଭେକ୍ସ କଣ୍ଟ୍ରୋଲ୍‌ସ: ଏହା ଅଭିନବ ଓ ବିଶେଷ ଭାବରେ ପାରସ୍ପରିକକ୍ରିୟାଶୀଳ (ଇଣ୍ଟରଆକ୍‌ଟିଭ୍) ୱେବସ୍ଥଳୀ ସୃଷ୍ଟି କରିବାରେ ସାହାଯ୍ୟ କରେ।
- ଚାଟ (ଆଳାପ): ଆମେ ଆଗରୁ ଜାଣିଛେ ଯେ ଚାଟ ବା ଆଳାପ କାରିକା କିପରି ଇଣ୍ଟରନେଟରେ ସଂଯୁକ୍ତ ଅବସ୍ଥାରେ ବାସ୍ତବ ସମୟରେ ଏକ ବା ଅଧିକ ଲୋକଙ୍କ ସହିତ କଥାହେବାର ସୁବିଧା ଯୋଗାଏ।
- ଆକ୍‌ଟିଭ ମୁଭି ଏପ୍ଲିକେସନ ପ୍ରୋଗ୍ରାମିଙ୍ଗ ଇଣ୍ଟରଫେସ୍: ଅନ୍ୟ ଭିଡିଓ ଓ ଅଡିଓ ଫର୍ମାଟ ତୁଳନାରେ ଏହା ଫାଇଲକୁ ଛୋଟ ଓ ଡାଉନଲୋଡ ସମୟକୁ କମ୍ ରଖିକରି ମଧ୍ୟ ଟେଲିଭିଜନ ମାନର ଭିଡିଓ ଓ ସିଡି ସମତୁଲ ଅଡିଓର ଅନୁଭୂତି ଦେଇଥାଏ।
- ଆକ୍‌ଟିଭ ଚ୍ୟାନେଲ ୱେବକାଷ୍ଟ: ନିୟମିତ ଭାବରେ ବିଭିନ୍ନ ଗତିଶୀଳ (ଡାଇନାମିକ) ସୂଚନା ତୁମ କମ୍ପ୍ୟୁଟରକୁ ପଠାଇବାରେ ଏହା ସାହାଯ୍ୟ କରେ।
- ସବ୍‌ସ୍କ୍ରିପସନ୍ (ଗ୍ରାହକତା): ତୁମେ ଚାହୁଁଥିବା ସୂଚନାକୁ ମାଗଣାରେ ଓ ତୁମ ପସନ୍ଦର ରୂପରେ ଏହା ସିଧା ତୁମ କମ୍ପ୍ୟୁଟର ଡେସ୍କଟପକୁ ପଠାଇଦିଏ।
- ଡାଇନାମିକ ଏଚ୍‌ଟିଏମଏଲ: ଗତିଶୀଳ ଏଚଟିଏମ୍‌ଏଲ୍ ଇଣ୍ଟରନେଟ ଏକ୍ସପ୍ଲୋରର ସହିତ କାମ କରିପାରେ। ଏହା ସାହାଯ୍ୟରେ ବିଶେଷ ଭାବରେ ମଜାଦାର ଓ ମନଲୋଭା ହେଉଥିବା ଏବଂ ଶୀଘ୍ର ଡାଉନଲୋଡ ହୋଇପାରୁଥିବା ୱେବପୃଷ୍ଠା ତିଆରି କରିବା ସମ୍ଭବ ହୁଏ।

## ବ୍ରାଉଜର ଭିତରକୁ ପ୍ରବେଶ

ନେଟସ୍କେପ ନେଭିଗେଟର ବା ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର ଭିତରକୁ ଯିବା ବେଶ୍ ସହଜ କଥା। ତୁମର ଡେସ୍କଟପରୁ ଉପଯୁକ୍ତ ଚିତ୍ର ସଙ୍କେତଚିତ୍ର (ଆଇକନ) ଉପରେ ମାଉସ୍ ଦବାଅ। ଉଭୟ କ୍ଷେତ୍ରରେ ତୁମେ ତାଙ୍କର ମୂଳପୃଷ୍ଠା ବା ହୋମପେଜରେ ପହଞ୍ଚିବ। ନେଟସ୍କେପ ହୋମପେଜରେ ତୁମେ ଦେଖିବ ଯେ ୱରକାର ଉପର ଡାହାଣ କୋଣରେ ପୃଥିବୀର ଚିତ୍ର ଉପରେ ଅକ୍ଷର 'N'ର ଛବିଟିଏ ଚାଲୁଥିବ। ଯେତେବେଳେ କୌଣସି ଫାଇଲ ସେଥିରେ ଖୋଲିବ ସେତେବେଳେ ଦେଖାଯିବ ଯେ ଗ୍ରହଟି ଘୂରୁଛି ଏବଂ ତାରା ଓ ଗ୍ରହମାନେ ତାକୁ ଡେଇଁ ମାଡ଼ିଚାଲିଛନ୍ତି। ଇଣ୍ଟରନେଟ ଏକ୍ସପ୍ଲୋରର ସଙ୍କେତ (ଲୋଗୋ) ହେଉଛି ଗୋଟିଏ ମୋଟାଲିଆ 'e' ଅକ୍ଷର ଭଳି ଯାହାକୁ କକ୍ଷପଥ ଭଳି ଘେରିକରି ଏକ ବଳୟ ରହିଛି। ଡାଉନଲୋଡ ଚାଲିଥିଲାବେଳେ 'e' ଘୂରିବାକୁ ଲାଗେ ଏବଂ ପୃଥିବୀ ଭଳି ଦେଖାଯାଏ। ଡାଉନଲୋଡ ପ୍ରକ୍ରିୟାଟି ସରିଗଲେ ତାହା ପୁଣି ତା'ର 'e' ରୂପକୁ ଫେରିଆସେ।




ଇଣ୍ଟରନେଟ ଏକ୍ସପ୍ଲୋରରର ମୂଳପୃଷ୍ଠା

### ଇଣ୍ଟରନେଟକୁ ମାଗଣା ସଂଯୋଗ

ଖବର କାଗଜରେ ଦେଖୁଥିବ ଯେ ଇଣ୍ଟରନେଟ ସେବା ଯୋଗାଣକାରୀମାନେ ତାଙ୍କର ସଂଯୋଗଠା ଦର କମାଇ ଚାଲିଛନ୍ତି ଏବଂ ଅନେକ ମାଗଣା ଜିନିଷ ଦେଇ ଗ୍ରାହକ ସଂଗ୍ରହ କରିବାକୁ ଚେଷ୍ଟା କରୁଛନ୍ତି। କିନ୍ତୁ ସବୁଠାରୁ ମଜା କଥା ଘଟୁଛି ଇଂଲଣ୍ଡରେ। ସେଠାରେ ସେବା ଯୋଗାଣକାରୀମାନେ ମାଗଣାରେ ଇଣ୍ଟରନେଟ ସଂଯୋଗ ଦେଉଛନ୍ତି। ତୁମକୁ କେବଳ ଟେଲିଫୋନ ଖର୍ଚ୍ଚ ଦେବାକୁ ହେବ। ସେହି କମ୍ପାନୀମାନେ ବିଜ୍ଞାପନରୁ ତାଙ୍କର ଲାଭ ଉଠାଇବେ।

ଭବିଷ୍ୟତରେ ଏପରି ହୋଇପାରେ ଯେ ଇଣ୍ଟରନେଟ ବ୍ୟବହାର କରିବା ପାଇଁ କମ୍ପାନୀମାନେ ତୁମକୁ ଟଙ୍କା ଦେବେ। ଭାବ ତ! ତୁମେ ଯେତେବେଳେ ସାଇବର ଦୁନିଆରେ ଘୂରିବୁଲୁଛ, ସେତେବେଳେ ସେଥିପାଇଁ ତୁମେ ଟଙ୍କା ବି ପାଉଛ।

ବ୍ରାଉଜରରେ ପ୍ରଦର୍ଶିତ ପୃଷ୍ଠାର ଠିକଣା ବା ୟୁଆରଏଲ 'ନେଟସାଇଟ' ବା 'ଠିକଣା' ଲେଖାଥିବା ବାକ୍ସରେ ଦେଖାଯାଏ। ନେଟସ୍କେପର ମୂଳପୃଷ୍ଠାରେ ନେଟସ୍କେପର ବିଭିନ୍ନ ଉତ୍ପାଦ ବିଷୟରେ ସୂଚନାକୁ ବହୁତଗୁଡ଼ିଏ ସଂଯୋଗ ବା *ଲିଙ୍କ୍* ଦେଖାଯିବ। ତୁମେ ଲକ୍ଷକରିବ ଯେ କୌଣସି ସଂଯୋଗ ଉପରକୁ ଗଲେ ଦର୍ଶିକାର ଆକୃତି ବଦଳି ଗୋଟିଏ ଛୋଟ ହାତଭଳି ହୋଇଯାଏ। ପୃଷ୍ଠାଟିଏ ଦେଖିଲାବେଳେ ତୁମେ କୌଣସି ସଂଯୋଗ ଉପରେ ମାଉସ୍ ଦବାଇ ସଂପର୍କିତ ଫାଇଲକୁ ଯାଇପାରିବ କିମ୍ବା ନୂଆ ଠିକଣା ବା ୟୁଆରଏଲ ଲେଖିକରି କୌଣସି ପୂରା ଅଲଗା ଦଲିଲକୁ ଯାଇପାରିବ। ବ୍ରାଉଜରକୁ ନୂଆ ଠିକଣା ଯୋଗାଇବାକୁ ହେଲେ ଦେଖାଯାଉଥିବା ଠିକଣା ଉପରକୁ ଦର୍ଶିକା ନିଅ ଏବଂ ଯେକୌଣସି ୱିଣ୍ଡୋ କାରିକାର ଧାରାରେ ଠିକଣାର ସମ୍ପାଦନା କରି ତାହାକୁ ବଦଳାଇଦିଅ। ଶେଷରେ ପ୍ରବେଶ ଚାବି ଚିପିଦିଅ।

ତୁମେ ଦେଖିବ ଯେ ପୂରା ୟୁଆରଏଲ ଟାଇପ ନକଲେ ବି ବ୍ରାଉଜର ତୁମକୁ ଠିକ ପୃଷ୍ଠା ପାଖରେ ପହଞ୍ଚାଇଦେବ। ଉଦାହରଣ ସ୍ୱରୂପ, ତୁମେ http://hotmail.com ବଦଳରେ ଖାଲି hotmail ଟାଇପ କରିପାରିବ। ତୁମେ ବ୍ୟବହାର କରୁଥିବା ୟୁଆରଏଲଗୁଡ଼ିକର ଏକ ଇତିହାସ ବ୍ରାଉଜର ଭିତରେ ରହିଥାଏ। ତୁମେ ଯେତେବେଳେ ଗୋଟିଏ ୟୁଆରଏଲ ଟାଇପ କରିବାକୁ ଆରମ୍ଭ କର ବ୍ରାଉଜର ତାହାର ଇତିହାସ ତାଲିକାରେ ତାହାର ମେଳକ ଖୋଜେ ଏବଂ ଯଦି କିଛି ମିଳିଯାଏ ତାହାକୁ ନେଇ ଠିକଣାଟି ପୂରା କରିଦିଏ।

କୌଣସି ପୃଷ୍ଠାରେ ତୁମେ ହୁଏତ ଦେଖିବ ଯେ ଚିତ୍ରଭଳି କିଛି ଲେଖା ଆସୁଛି ଯାଉଛି। ଏଗୁଡ଼ିକ ହେଉଛି *ଜାଭା ଆପଲେଟ*। ଏହି ଆପଲେଟ ବା କ୍ଷୁଦ୍ରପ୍ରୟୋଗଗୁଡ଼ିକ ଜାଭା ନାମରେ ଏକ ପ୍ରକାର କାରିକାଲିଖନ ଭାଷା ସାହାଯ୍ୟରେ ଲେଖାଯାଇଥାଏ। ପୁରୁଣା ବ୍ରାଉଜର କାରିକା ହୁଏତ ଏହି ଜାଭା ଆପଲେଟକୁ ଦେଖାଇ ପାରିବନାହିଁ।

### *ବାସ୍ତବ ଅନୁଭୂତି*

ୱେବରେ ବୁଲିବାର ବାସ୍ତବ ଅନୁଭୂତି ପାଇଁ ଚାଲ ଏବେ ୟାହୁ (http://www.yahoo.com/) ୱେବସ୍ଥଳୀକୁ ଯିବା। ଏହି ୟୁଆରଏଲକୁ ଠିକଣା (ଏଡ୍ରେସ) ବା ନେଟସାଇଟ ବାକ୍ସରେ ଟାଇପକରି ପ୍ରବେଶ ଚାବି ଦବାଇଲେ ଆମେ ୟାହୁ! ସ୍ଥଳୀର ମୂଳପୃଷ୍ଠାରେ ପହଞ୍ଚିବା। ୟାହୁ! ନିଜ ନିଜ ସହିତ ଯୋଡ଼ାଥିବା ଦୁଇଟି ସୁବିଧା ଯୋଗାଇଥାଏ।

- ଗୋଟିଏ ହେଉଛି ବିଭିନ୍ନ ସାଧନର *ଡାଇରେକ୍ଟୋରି*। ଏଥିରେ କୌଣସି ବିଷୟ ଶୀର୍ଷକରେ ମାଉସ ଦବାଇ ଏବଂ ଆଗକୁ ଆସୁଥିବା ବିଷୟଗୁଡ଼ିକରୁ ବାଛି ବାଛି ଆମେ ଉପଯୁକ୍ତ ଦଲିଲ ପାଖରେ ପହଞ୍ଚିପାରିବା।
- ଅନ୍ୟଟି ହେଉଛି ଗୋଟିଏ *ସର୍ଚ୍ଚ ଇଂଜିନ* ବା ସନ୍ଧାନୀ କଳ। ୟାହୁ! ଡାଇରେକ୍ଟୋରିରେ ରହିଥିବା ଦଲିଲଗୁଡ଼ିକ ଭିତରୁ କେଉଁଥିରେ କିଛି ନିର୍ଦ୍ଦିଷ୍ଟ ଶବ୍ଦ ରହିଛି ତାହା ଖୋଜିବାରେ ସର୍ଚ୍ଚ ଇଞ୍ଜିନ ଆମକୁ ସାହାଯ୍ୟ କରେ।

ଆହୁରି ମଧ୍ୟ ସେହି ୱେବପୃଷ୍ଠାରେ ସମ୍ବାଦ, ବଜାର ଓ ୟାହୁର ଭିତର ଭଳି ନାଁରେ ଆମକୁ ଅନେକ ଆଗ୍ରହଜନକ ସଂଯୋଗ ମିଳିପାରିବ।

ତୁମେ ଯଦି ଫିନଲାଣ୍ଡ ବୁଲିଯିବାକୁ ଚାହୁଁଛ ତେବେ ତାହା ଉପରେ ଅଧିକ ଜାଣିବାପାଇଁ ଅବସର ଓ ଖେଳ ବିଭାଗରେ ଭ୍ରମଣ ଶବ୍ଦକୁ ବାଛିଲେ ତୁମର ଖୋଜିବା କମିଯିବ। ସେଠାରେ ସର୍ଚ୍ଚ ବାକ୍ସରେ 'ଫିନଲାଣ୍ଡ' ଲେଖିକରି ସର୍ଚ୍ଚ ବୋତାମ ଦବାଇଲେ ତୁମର ଖୋଜିବା ସର୍ତ୍ତ ସହ ମେଳ ଖାଉଥିବା ସବୁ ୱେବସ୍ଥଳୀର ତାଲିକା ବାହାରିବ। ଏହିଠାରେ ତୁମେ ବିଭିନ୍ନ ସଂଯୋଗ ଉପରେ ମାଉସ ଦବାଇ ଦରକାରୀ ସୂଚନା ପାଇପାରିବ।

Address http://www.yahoo.com/ Go


Auctions


Messenger


Check Email

YAHOO!


What's New


Personalize


Help

Yahoo! Mail
free from anywhere

Move on. Try Yahoo! Real Estate

Yahoo! Calendar
personal web calendar

Search advanced search

Y! Shopping - Depts: Electronics, Toys, Gifts, Jewelry, Stores: Dell4Me, Saks, Macy's, and more

Shop Auctions · Classifieds · PayDirect · Shopping · Travel · Yellow Pgs · Maps Media Finance/Quotes · News · Sports
Connect Chat · Clubs · Experts · GeoCities · Greetings · Invites · Mail · Members · Messenger · Mobile · Personals · People
Personal Addr Book · Briefcase · Calendar · My Yahoo! · Photos Fun Games · Kids · Movies · Music · Radio · TV

Yahoo! Auctions - Bid, buy, or sell anything!

| Categories | | Items | |
|---|---|---|---|
| · Antiques | · Computers | · PlayStation 2 | · Scooters |
| · Autos | · Electronics | · MP3 Players | · Digital Cameras |
| · Coins | · Sports Cards | · Music Divas | · Baseball Cards |
| · Comic Books | · Stamps | · Lincoln Pennies | · Palm Pilots |

Got Something to Sell? Auction it Now!

In the News
· Dale Earnhardt Sr. killed in Daytona 500 crash
· Iraq vows revenge for attacks
· Suspects wanted in Dartmouth murders captured
· 'Hannibal' tops box office
more...

Marketplace

Arts & Humanities News & Media

ୟାହୁ! ୱେବସ୍ଥଳୀର ମୂଳପୃଷ୍ଠା ।

## *ବ୍ରାଉଜର ସମ୍ପର୍କିତ କିଛି ବିଶେଷ ଶବ୍ଦ*

ବ୍ରାଉଜରକୁ ଫଳପ୍ରଦ ଭାବରେ ବ୍ୟବହାର କରିବାପାଇଁ ଆମକୁ ବ୍ରାଉଜର ସମ୍ବନ୍ଧୀୟ ସାଧାରଣ ପରିଭାଷା ସହିତ ପରିଚିତ ହେବାକୁ ହେବ । ଏହା ଭିତରୁ କିଛି ବିଶେଷ ଶବ୍ଦର ବର୍ଣ୍ଣନା ତଳେ ଦିଆଯାଇଛି ।

ହୋମ୍ ପେଜ (ମୂଳପୃଷ୍ଠା): ବ୍ରାଉଜର ଖୋଲିଲା ବେଳକୁ ଯେଉଁ ପୃଷ୍ଠା ପ୍ରଥମେ ଦେଖାଯାଏ ତାହାକୁ ମୂଳପୃଷ୍ଠା ବା ହୋମ୍ ପେଜ୍ କୁହାଯାଏ । ୱେବ ଅଭିଯାନରେ ଏହା ଆମର ଘର ଭଳି କାମ କରେ । ୱେବ ଭିତରେ ଆମେ ବାଟ ଭୁଲିଯିବା ତେବେ ହୋମ ବୋତାମରେ ମାଉସ ଦବାଇଲେ ଆମକୁ ତାହା ମୂଳପୃଷ୍ଠାକୁ ଫେରାଇଆଣେ । ୱେବସ୍ଥଳୀର ପ୍ରଥମ ପୃଷ୍ଠାଗୁଡ଼ିକୁ ମଧ୍ୟ ହୋମ ପେଜ କୁହାଯାଏ ।

ହିଷ୍ଟୋରି ଲିଷ୍ଟ (ଇତିହାସ ତାଲିକା): ଆମେ ଆଗରୁ ଦେଖିଥିବା ସବୁ ୱେବପୃଷ୍ଠାର ତାଲିକା ଏଥିରେ ରହିଥାଏ ।

ବୁକମାର୍କସ୍ (ପୃଷ୍ଠା ଚିହ୍ନ): ତୁମର ପ୍ରିୟ ୱେବପୃଷ୍ଠା ସବୁର ଗୋଟିଏ ତାଲିକା ତୁମେ କରିପାରିବ । ଏହି ସବୁ ପୃଷ୍ଠାକୁ ଶୀଘ୍ର ଫେରିବାରେ ଏହି ତାଲିକା ତୁମକୁ ସାହାଯ୍ୟ କରିଥାଏ । ବିଭିନ୍ନ ବ୍ରାଉଜରରେ ଏହି ସୁବିଧା ଅଲଗା ଅଲଗା ନାଁରେ ଜଣା । ଇଣ୍ଟରନେଟ ଏକ୍ସପ୍ଲୋରର ଏହାକୁ *ଫେଭରାଇଟ୍ସ* (ପ୍ରିୟ) କହିଥାଏ, କିନ୍ତୁ ନେଟସ୍କେପରେ ତାହାର ନାମ ରହିଛି *ବୁକମାର୍କସ୍* ବା ପୃଷ୍ଠାଚିହ୍ନ ।

ଉପକରଣ (ଟୁଲ): ବ୍ରାଉଜରରେ ଗୋଟିଏ ଟୁଲବାର ବା ଉପକରଣ ପଟି ରହିଥାଏ । ସେଥିରେ ଥିବା ବୋତାମଗୁଡ଼ିକ ମେନୁର ବିଭିନ୍ନ ନିର୍ଦ୍ଦେଶ ପାଇଁ ସର୍ଟକର୍ଟ ଅଟନ୍ତି । ଏଗୁଡ଼ିକର ସାହାଯ୍ୟରେ ବ୍ରାଉଜିଙ୍ଗ ଦ୍ରୁତ ଓ ସହଜ ହୋଇପାରେ । ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରର ଓ ନେଟସ୍କେପ ନେଭିଗେଟରରେ କେଉଁ ପ୍ରକାରର ଉପକରଣ ସବୁ ରହିଛି ତାହା ଏଠାରେ ଦେଖିବା ।

*ବ୍ୟାକ (ପଛ):* ଏବେ ଦେଖାଯାଉଥିବା ପୃଷ୍ଠାରୁ ଆରମ୍ଭ କରି ଆଗରୁ ଦେଖି ସାରିଥିବା ପୃଷ୍ଠାମାନଙ୍କୁ ଗୋଟିଏ ଗୋଟିଏ କରି ଦେଖାଇବା ଏହି ବୋତାମର କାମ। ମାଇକ୍ରୋସଫ୍ଟ ଇଣ୍ଟରନେଟ ଏକ୍ସପ୍ଲୋରରରେ ପୂର୍ବ ବୋତାମରେ ମାଉସର ଡାହାଣ ଚାବି ଦବାଇଲେ (ଡାହାଣ-କ୍ଲିକ କଲେ) ଏବେ ଏବେ ଦେଖିଥିବା ପୃଷ୍ଠାଗୁଡ଼ିକର ଏକ ତାଲିକା ବାହାରିବ। ସେଥିରୁ କୌଣସି ପୃଷ୍ଠା ବାଛିଲେ ତାହା ବ୍ରାଉଜରରେ ଦେଖାଯିବ।

*ଫରୱାର୍ଡ (ଆଗ):* ପଛ (ବ୍ୟାକ) ବୋତାମ ବ୍ୟବହାର କରି ଯେଉଁ ପୃଷ୍ଠାମାନ ତୁମେ ଦେଖିସାରିଛ ସେଗୁଡ଼ିକୁ ଡେଇଁ ଡେଇଁ ଆଗକୁ ଫେରାଇଆଣିବା ଏହି ଉପକରଣର କାମ। ଇଣ୍ଟରନେଟ ଏକ୍ସପ୍ଲୋରରରେ ଫରୱାର୍ଡ (ଆଗ) ବୋତାମକୁ ଡାହାଣ-କ୍ଲିକ କରି ତାଲିକାରୁ କୌଣସି ପୃଷ୍ଠା ବାଛିପାର।

*ଷ୍ଟପ (ବନ୍ଦ):* ଏହା ୱେବପୃଷ୍ଠାର ଉତାରିବା ପ୍ରକ୍ରିୟାକୁ ଅଟକାଇଥାଏ। ଯେ କୌଣସି କାରଣରୁ ତୁମେ ଗୋଟିଏ ପୃଷ୍ଠାର ଉତାରିବା ବନ୍ଦ କରିବାକୁ ଚାହୁଁଥିଲେ ଏହାକୁ କ୍ଲିକ୍ କର। ପୃଷ୍ଠାଟି ଉତାରିବାରେ ଯଦି କିଛି ଅସୁବିଧା ହେଉଥାଏ କିମ୍ବା ଉତାରିବାର ଶେଷ ପର୍ଯ୍ୟନ୍ତ ତୁମେ ଅପେକ୍ଷା କରିବାକୁ ଯଦି ଚାହୁଁନଥାଅ, ତାହାହେଲେ ଏହା ସାହାଯ୍ୟରେ ତାକୁ ବନ୍ଦ କରିଦିଅ। ପରେ ତୁମେ ଏହାକୁ ଉତାରିବାପାଇଁ ପୁଣି ଥରେ ଚେଷ୍ଟା କରିପାର କିମ୍ବା ଅନ୍ୟ ସ୍ଥାନରେ ବ୍ରାଉଜ କରିଚାଲ।

*ରିଫ୍ରେସ (ସତେଜନ):* ତୁମର ଡିସ୍କକ୍ୟାସେରେ ଗଚ୍ଛିତ ରହିଥିବା କୌଣସି ୱେବପୃଷ୍ଠାର ସର୍ବଶେଷ ରୂପକୁ ଦେଖାଇବା ହେଉଛି ଏହାର କାମ। ଆଗରୁ ଦେଖିଥିବା କୌଣସି ପୃଷ୍ଠାକୁ ଯଦି ତୁମେ ଫେରିଆସ, ତେବେ ତୁମର ବ୍ରାଉଜର ପ୍ରଥମେ ତୁମ ଡିସ୍କକ୍ୟାସେରେ ଗଚ୍ଛିତଥିବା ଫାଇଲଟି ଦେଖାଇବ। ଉତାରିବା ସମୟ କମାଇବାପାଇଁ ବ୍ରାଉଜର ୱେବରେ ରହିଥିବା ସର୍ବଶେଷ ପୃଷ୍ଠା ବଦଳରେ ଗଚ୍ଛିତ ପୃଷ୍ଠା ଦେଖାଇଥାଏ।




ନେଟସ୍କେପ ନେଭିଗେଟର ମୂଳପୃଷ୍ଠା।

*ରିଲୋଡ (ପୁନରୁଦ୍ଧାର):* ଏହି ଉପକରଣ ପ୍ରଦର୍ଶିତ ହେଉଥିବା ଦଲିଲକୁ ପୁଣି ଥରେ ଉତାରିଥାଏ। ପ୍ରଥମ ଚେଷ୍ଟାରେ ଦଲିଲଟି ଠିକ ଭାବରେ ଉତାରି ହୋଇନଥିଲେ ଏହା ତାହାକୁ ସୁଧାରିପାରେ।

*ହୋମ (ଆସ୍ଥାନ):* ତୁମକୁ ମୂଳପୃଷ୍ଠାକୁ ଫେରାଇ ଆଣେ। ତୁମେ ଯେ କୌଣସି ୱେବପୃଷ୍ଠାକୁ ତୁମର ମୂଳପୃଷ୍ଠା ଭାବରେ ବାଛିପାରିବ।

*ସର୍ଚ୍ଚ (ଖୋଜ):* ଲୋକପ୍ରିୟ ଇଣ୍ଟରନେଟ ସର୍ଚ୍ଚ ଇଞ୍ଜିନର ତାଲିକା ଦେଖାଏ ଯାହା ଭିତରୁ କୌଣସି ଗୋଟିଏକୁ ତୁମେ ବାଛିପାର। ଖୋଜିବାର ବିଷୟ ଜଣାଇଲେ ସେହି ସୂଚନାଥିବା ୱେବସ୍ଥଳୀ ସବୁର ତାଲିକା ବାହାରିବ।

*ଫେଭରାଇଟ୍ସ / ବୁକମାର୍କ (ପ୍ରିୟ / ପୃଷ୍ଠାଚିହ୍ନ):* ଫେଭରାଇଟ୍ ବା ବୁକମାର୍କ ଭାବରେ ରଖାଯାଇଥିବା ୱେବସ୍ଥଳୀର ତାଲିକା ଦେଖାଏ। ତାଲିକାରୁ କୌଣସି ୱେବସ୍ଥଳୀ ଉପରେ କ୍ଲିକ୍ କଲେ ତାହା ପାଖକୁ ତୁମେ ଯାଇପାରିବ।

*ପ୍ରିଣ୍ଟ (ମୁଦ୍ରଣ):* ତୁମେ ଦେଖୁଥିବା ପୃଷ୍ଠାକୁ ଛପାଇବାକୁ ଏହା ମୁଦ୍ରଣୀକୁ ପଠାଇଦିଏ। ଇଣ୍ଟରନେଟରୁ ସୂଚନା ପାଇତି ରଖିବାପାଇଁ ଏହା ଗୋଟିଏ ବାଟ। ଛପା ନକଲଟିଏ ରଖିଲେ ଏହାକୁ ପୁଣିଥରେ ଦେଖିବା ପାଇଁ ତୁମକୁ ଇଣ୍ଟରନେଟରେ ସଂଯୋଗ କରିବାକୁ ହେବନାହିଁ। ସେହି ପୃଷ୍ଠାରେ ଥିବା ଅତିସଂଯୋଗ (ହାଇପରଲିଙ୍କ) ସବୁର ଠିକଣାକୁ ମଧ୍ୟ ତୁମେ ମୁଦ୍ରଣ କରିପାରିବ ଏବଂ ତାହା ସାହାଯ୍ୟରେ ତୁମେ ପରେ କେବେ ଚାହିଁଲେ ସେହିସବୁ ସ୍ଥଳୀକୁ ସହଜରେ ଯାଇପାରିବ।

*ଫଣ୍ଟ (ଅକ୍ଷର):* ପ୍ରଦର୍ଶିତ ଲେଖାକୁ ବଡ଼ କିମ୍ବା ଛୋଟ ଆକାରରେ ବା ଅଲଗା ଅକ୍ଷରରେ ଏହା ଦେଖାଇଥାଏ।

*ମେଲ୍ (ଡାକ):* ଇଣ୍ଟରନେଟ ଏକ୍ସପ୍ଲୋରର କ୍ଷେତ୍ରରେ ଏହା ତୁମକୁ ଇଣ୍ଟରନେଟ ଡାକ ସରବରାହ କାରିକା ସହିତ ସଂଯୁକ୍ତ କରିଥାଏ ଏବଂ ଇ-ଡାକ ଓ ଖବରଦଳ ସନ୍ଦେଶ ପଢ଼ିବାରେ ସାହାଯ୍ୟ କରିଥାଏ।

*ଗାଇଡ୍ (ପଥପ୍ରଦର୍ଶକ):* ନେଟସ୍କେପ ନେଭିଗେଟରରେ ଗାଇଡ୍ ବୋତାମ ଇଣ୍ଟରନେଟରେ ଥିବା ଅନେକ ଆଗ୍ରହଜନକ ଜାଗାକୁ ତୁମକୁ ନେଇଯାଏ।

*ସିକ୍ୟୁରିଟି (ନିରାପତ୍ତା):* କୌଣସି ୱେବସ୍ଥଳୀ କେତେ ନିରାପଦ ତାହାର ସୂଚନା ପାଇବାପାଇଁ ନେଟସ୍କେପ ନେଭିଗେଟରରେ ସିକ୍ୟୁରିଟି ବୋତାମ କାମଦିଏ। ନେଭିଗେଟର ଓ ମେସେଞ୍ଜରରେ ପାସ୍‌ୱର୍ଡ ରଖିବାପାଇଁ, ଜାଭା କ୍ଷୁଦ୍ରପ୍ରୟୋଗ (ଆପ୍‌ଲେଟ୍ସ) ଓ ଜାଭାସ୍କ୍ରିପ୍ଟ ସ୍କ୍ରିପ୍ଟ ଉପରେ ନିୟନ୍ତ୍ରଣ ରଖିବା ପାଇଁ ଏବଂ ବିଭିନ୍ନ ୱେବସ୍ଥଳୀର ସାର୍ଟିଫିକେଟ ଦେଖିବା ପାଇଁ ଏହାକୁ କାମରେ ଲଗାଇପାରିବ।

*ହେଲ୍ପ (ସହାୟତା):* ଉଭୟ ଇଣ୍ଟରନେଟ ଏକ୍ସପ୍ଲୋରର ଓ ନେଟସ୍କେପ ନେଭିଗେଟର ବ୍ୟାପକ ସାହାଯ୍ୟ ସୁବିଧା ଯୋଗାଇଥାନ୍ତି। ମେସେଞ୍ଜର, କୋଲାବ୍ରା, କନଫେରେନ୍ସ ଓ ନେଟ୍‌କାଷ୍ଟର ଆଦି ବିଷୟରେ ନେଟସ୍କେପ୍ ନେଭିଗେଟର ସାହାଯ୍ୟର ବ୍ୟବସ୍ଥା ରଖିଥାଏ। ଇଣ୍ଟରନେଟ ଏକ୍ସପ୍ଲୋରର ମଧ୍ୟ ଅନେକ ସହାୟକ ସୂଚନା ଦିଏ ଏବଂ ସହଜ ବାଟ ବତାଇଦିଏ। ଏକ୍ସପ୍ଲୋରରରେ କ'ଣ ନୂଆ, ୱିଣ୍ଡୋଜ୍ ବିଷୟରେ କିଛି ମୌଳିକ ଧାରଣା ଏବଂ ୱେବ ଓ ତୁମେ ଭଳି କିଛି ସହାୟକ ଦଲିଲ ଇଣ୍ଟରନେଟ ଏକ୍ସପ୍ଲୋରର ଭିତରେ ମିଳିଥାଏ। ବ୍ରାଉଜର ବିଷୟରେ ଅଧିକ ଜାଣିବା ପାଇଁ ଏହି ସାହାଯ୍ୟ ବ୍ୟବସ୍ଥାର ବ୍ୟବହାର କରାଯାଇପାରିବ।

ହେଲ୍ପ (ସାହାଯ୍ୟ) ମେନୁରେ କ୍ଲିକ କଲେ ବିଭିନ୍ନ ବିଷୟର ତାଲିକା ବାହାରେ। ସେଥିରେ କୌଣସି ନିର୍ଦ୍ଦିଷ୍ଟ ବିଷୟ ବାଛିଲେ ତାହା ଉପରେ ସହାୟକ ସୂଚନା ମିଳିଯାଏ।

ଏହି ଦୁଇ ବ୍ରାଉଜର ଭିତରୁ କୌଣସି ଗୋଟିକରେ ବ୍ୟାପକ ଭାବରେ କାମ କରିଲେ ତୁମେ ବୁଝିପାରିବ ଯେ ସେଥିରେ ଅନେକ କିଛି କରିହେବ। ଏଥିରୁ କିଛି କାମ ତୁମେ ଆଗରୁ କଳ୍ପନା ବି କରିପାରିନଥିବ। ଆମେ ସେହି ସବୁ କାମ ବିଷୟରେ ଏହି ପ୍ରାରମ୍ଭିକ ବହିଟିରେ ଆଲୋଚନା କରିପାରିବା ନାହିଁ।

*ଇଣ୍ଟରନେଟରୁ ସମ୍ବଳ ସଂଗ୍ରହ*

ନେଭିଗେଟର ସାହାଯ୍ୟରେ କୌଣସି ୱେବପୃଷ୍ଠା ଖୋଲିବାପାଇଁ ଅନେକ ବାଟ ରହିଛି। ସେଗୁଡ଼ିକର ବର୍ଣ୍ଣନା ତଳେ ଦିଆଯାଇଛି।

୧. ତୁମ ପାଖରେ ୱେବପୃଷ୍ଠାର ୟୁଆର୍‌ଏଲ୍ ବା ଠିକଣା ଥିଲେ ତାହା ବ୍ରାଉଜରକୁ ଯୋଗାଇ ସିଧାସଳଖ ୱେବପୃଷ୍ଠାକୁ ଯାଇପାର। ନେଭିଗେଟରକୁ ଠିକଣା ଯୋଗାଇବାପାଇଁ ଦୁଇଟି ବାଟ ରହିଛି –

କ. ନେଭିଗେଟର ପରଦାର ଉପର ପଟକୁ ଥିବା ନେଟ୍‌ସାଇଟ ବାକ୍ସରେ କ୍ଲିକ୍ କରି ସେଠାରେ ନୂଆ ୟୁଆରଏଲ ଟାଇପ କରିଦିଅ ଓ ପ୍ରବେଶ ଚାବି ଚିପିଦିଅ।

ଖ. ପରଦାର ଉପର ବାମ କୋଣରେ ଥିବା ଫାଇଲ ମେନୁରୁ ଓପନ ପେଜ ନିର୍ଦ୍ଦେଶ ବାଛିଲେ ଗୋଟିଏ ଝରକା ବାହାରି ଆସିବ। ସେଥିରେ ଖାଲିଥିବା ଠିକଣା ଜାଗାରେ ତୁମେ ଚାହୁଁଥିବା ଫାଇଲର ୟୁଆର୍‌ଏଲ୍ ଟାଇପ କର। ପ୍ରବେଶ ଚାବି ଚିପିଦିଅ।

୨. ଯଦି ତୁମେ କୌଣସି ୱେବପୃଷ୍ଠା ଦେଖୁଥିଲାବେଳେ କିଛି ଲେଖା ବା ଚିତ୍ର ଉପରକୁ ଆସିଲେ ମାଉସ ଦର୍ଶିକାର ରୂପ ବଦଳି ଗୋଟିଏ ହାତ ଭଳି ହୋଇଯାଏ ଏବଂ ପରଦାର ତଳପଟକୁ ଗୋଟିଏ ୟୁଆର୍‌ଏଲ୍ ଦେଖାଯାଏ। ଶବ୍ଦ ବା ଚିତ୍ର ଉପରେ କ୍ଲିକ୍ କରିଲେ ତୁମେ ସେହି ନୂଆ ୱେବପୃଷ୍ଠାକୁ ଯାଇପାରିବ। ସଂଯୋଗ ରହିଥିବା କିଛି ଲେଖାରେ ତୁମେ କ୍ଲିକ କଲେ ବ୍ରାଉଜର ସେହି ଫାଇଲକୁ ଉଦ୍ଧାର କରିବ ଏବଂ କମ୍ପ୍ୟୁଟର ପରଦାରେ ଦେଖାଇବ।

ଟୀକା: ଯେଉଁ ଲେଖାରେ କିଛି ସଂଯୋଗ ରହିଥାଏ ତାହାର ରଙ୍ଗ ସାଧାରଣତଃ ନୀଳ ହୋଇଥାଏ ଏବଂ ଆଗରୁ ଦେଖାଯାଇଥିବା ସଂଯୋଗ ପାଇଁ ଗୋଲାପି ରଙ୍ଗ ବ୍ୟବହାର କରାଯାଏ। କିନ୍ତୁ ଏବେ ୱେବପୃଷ୍ଠାରେ ସଂଯୋଗ ପାଇଁ କିଛି ନିର୍ଦ୍ଦିଷ୍ଟ ରଙ୍ଗ ରହୁନାହିଁ। ତେଣୁ କେଉଁ ଲେଖାରେ ସଂଯୋଗ ରହିଛି ତାହା ଜାଣିବାର ସବୁଠାରୁ ଭଲବାଟ ହେଉଛି ସେଠାରେ ମାଉସ ଦର୍ଶିକାର ଆକୃତି ବଦଳୁଛି କି ନାହିଁ ତାହା ଦେଖିବା।

୩. ତୁମେ ଯଦି ପ୍ରାକ-ସ୍ଥାପିତ ସଂଯୋଗ ବ୍ୟବହାର କରିବାକୁ ଚାହୁଁଥିବ ତାହାହେଲେ ନେଭିଗେଟରର *ରିସୋର୍ସ ଲିଙ୍କ* (ସଂସାଧନ ସଂଯୋଗ) ବା *ବୁକମାର୍କସ୍* (ପୃଷ୍ଠାଚିହ୍ନ) ବ୍ୟବହାର କର।

କ. ନେଭିଗେଟରର ସଂସାଧନ ସଂଯୋଗ (ରିସୋର୍ସ ଲିଙ୍କ): ପ୍ରାକସଂସ୍ଥାପିତ ସଂସାଧନର ବ୍ୟବହାର ପାଇଁ ନେଭିଗେଟରର ନେଭିଗେସନ ପଟିରେ ସର୍ଚ୍ଚ ଓ ନେଟସ୍କେପ୍ ନାଁରେ ଦୁଇଟି ଚିତ୍ରସଙ୍କେତ ରହିଥାଏ।

ସର୍ଚ୍ଚ ସଙ୍କେତରେ କ୍ଲିକ୍ କଲେ ତୁମେ ନେଟ୍ ସର୍ଚ୍ଚ ସିଲେକ୍ଟ ପେଜକୁ ଚାଲିଯିବ। ଖୋଜିବାର ପରିସରକୁ ଛୋଟ ରଖିବା ପାଇଁ ଏହିଠାରେ ଗୋଟିଏ ନିର୍ଦ୍ଦିଷ୍ଟ ଦେଶକୁ ବଛାଯାଇପାରେ। 'ଗୋ' (ଚାଲ) ଉପରେ କ୍ଲିକ୍ କଲେ ତୁମେ ସର୍ଚ୍ଚ ଇଞ୍ଜିନ ବାଛିବାର ପରଦାକୁ ଯିବ ଏବଂ ସେଠାରେ ସର୍ଚ୍ଚ ବାକ୍ସରେ ଉପଯୁକ୍ତ ଶବ୍ଦ ଯୋଗାଇ ଖୋଜିବାର କାମ ଆରମ୍ଭ କରିବ।

ନେଟସ୍କେପ ବିକଳ୍ପ ତୁମକୁ my.netscape.com ପୃଷ୍ଠାକୁ ନେଇଯିବ। ଏହିଠାରେ 'ସର୍ଚ୍ଚ ଦି ୱେବ' କଥୋପକଥନ (*ଡାଏଲଗ*) ବାକ୍ସରେ ଆମେ କଳା, ସ୍ୱାସ୍ଥ୍ୟ ଆଦି ବିକଳ୍ପ ଭିତରୁ ଖୋଜିବାର ବିଷୟ ବିଭାଗ ବାଛିପାରିବା। ନତୁବା Find a business (ବ୍ୟାପାର ଖୋଜ), What's new (କ'ଣ ନୂଆ), Find a member (ସଦସ୍ୟଙ୍କୁ ଖୋଜ), What is cool (କଣ ମଜାଦାର), Find a person (ଲୋକଙ୍କୁ ଖୋଜ) ଇତ୍ୟାଦି ବିକଳ୍ପରୁ କିଛି ବାଛିପାରିବା। ଏଠାରେ ମଧ୍ୟ ତୁମେ ସର୍ଚ୍ଚ ବାକ୍ସରେ ଶବ୍ଦଟିଏ ଟାଇପକରି ଖୋଜିବା କାମ କରିପାରିବ।

ଖ. ବୁକ୍‌ମାର୍କସ୍: ଲୋକେସନ ବାର୍‌ରେ ଥିବା ବୁକ୍‌ମାର୍କ ଆଇକନ୍ ଜରିଆରେ ବୁକ୍‌ମାର୍କଗୁଡ଼ିକୁ କାମରେ ଲଗାଯାଏ। ସର୍ଚ୍ଚ, ବିଷୟ ବିଭାଗ (ଡାଇରେକ୍‌ଟୋରି), ବ୍ୟବସାୟ ଓ ପୁଞ୍ଜି ବିନିଯୋଗ ଇତ୍ୟାଦି ବିକଳ୍ପ ମଧ୍ୟ ଏହା ଦର୍ଶାଏ। ଏଥିରେ ଆହୁରି କେତେ ସଂପାଧନ ବିକଳ୍ପ ରହିଛି ଯାହାକୁ ବାଛିଲେ ତୁମେ କୌଣସି ନିର୍ଦ୍ଦିଷ୍ଟ ୱେବସ୍ଥଳୀକୁ ଯାଇପାରିବ। ତୁମର କମ୍ପ୍ୟୁଟରରେ ନେଟସ୍କେପରେ ଆଗରୁ କାମ କରିଥିବା ଲୋକ ରଖିଥିବା ସଂପାଧନର ତାଲିକା ମଧ୍ୟ ଏହି ବିକଳ୍ପ ତାଲିକାରେ ରହିଥିବ। ତୁମେ ଚାହୁଁଥିବା ଯେ କୌଣସି ଗୋଟିଏକୁ ବାଛିକରି ପ୍ରବେଶ ଚାବି ଟିପିପାରିବ। କମ୍ୟୁନିକେଟର ମେନୁରୁ ମଧ୍ୟ ବୁକ୍‌ମାର୍କସ ବିକଳ୍ପ ବାଛି ଏହିସବୁ କରିହେବ।

### *ୱେବ ଭ୍ରମଣ*

ଇଣ୍ଟରନେଟ ସଂଯୋଗର ଚାଲୁରହିଥିବା ଅଧିବେଶନରେ ତୁମେ ଦେଖିଥିବା ୱେବପୃଷ୍ଠାଗୁଡ଼ିକ ଭିତରେ ଆଗପଛ ହୋଇ ବୁଲିବାର ସୁବିଧା ଉଭୟ ନେଟସ୍କେପ ନେଭିଗେଟର ଓ ଇଣ୍ଟରନେଟ ଏକ୍ସପ୍ଲୋରରରେ ରହିଥାଏ। ଏଥିରେ କାମ ଦେଉଥିବା ବୋତାମଗୁଡ଼ିକ ବିଷୟରେ ଆମେ ଆଗରୁ ଜାଣିସାରିଛେ। ସଂକ୍ଷେପରେ,

**★ ଆଗରୁ ଦେଖିଥିବା ୱେବସ୍ଥଳୀ ପାଖକୁ ଫେରିବାପାଇଁ –**

- ବ୍ୟାକ୍ ବୋତାମକୁ ଦବାଅ। ନେଟସ୍କେପ ନେଭିଗେଟରରେ ଏହା ତୁମ ପରଦାର ଉପର ବାମ କୋଣରେ ଥିବା ନେଭିଗେସନ ବାର ଦେହରେ ଏକ ବଡ଼ ବାମମୁହାଁ ତୀର ରୂପରେ ଥାଏ। ଏହି ବୋତାମ ଉପରେ ଥରେକରି କ୍ଲିକ କଲେ ତୁମେ ଆଗରୁ ଦେଖିଥିବା ପୃଷ୍ଠାଗୁଡ଼ିକୁ ଗୋଟିଏ ପରେ ଗୋଟିଏ ହୋଇ ଫେରିଯିବ। ତୁମର ମାଉସ ଦର୍ଶିକାକୁ ଏହା ଉପରେ ରଖିଲେ, ଆଗକୁ ଆସିବାକୁଥିବା ପୃଷ୍ଠାର ଶିରୋନାମା କ୍ଷଣକପାଇଁ ଦେଖାଯିବ।
- କିମ୍ବା ମେନୁ ବାରରେ ଥିବା 'ଗୋ' ବୋତାମକୁ କ୍ଲିକ୍ କଲେ ତୁମେ ବୁଲିଥିବା ଅନେକ ସ୍ଥାନର ଏକ ତାଲିକା ବାହାରିବ। ଯେଉଁ ସ୍ଥଳୀକୁ ଫେରିବାକୁ ଚାହୁଁଥିବ ତାହା ଉପରେ କ୍ଲିକ୍ କର। ଏହା ବ୍ୟାକ୍ ବୋତାମ ବା ପଛୁଆ ତୀର ଉପରେ ଅନେକ ଥର କ୍ଲିକ୍ କରିବା ସହିତ ସମାନ ହେବ। ଏହିଠାରେ ମଧ୍ୟ ତୁମେ ବ୍ୟାକ୍ ବିକଳ୍ପରେ କ୍ଲିକ୍ କରିପାରିବ।

**★ ଆଗକୁ ଯିବା –**

- ତୁମେ ଯେତେବେଳେ ବ୍ୟାକ୍ ବୋତାମ ବା ପଛୁଆ ତୀର ସାହାଯ୍ୟରେ ଆଗର କେଉଁ ସ୍ଥଳୀକୁ ଫେରିଆସିଛ, ସେଠାରେ ତୁମେ ଫରୱାର୍ଡ ବୋତାମ (ନେଟସ୍କେପ ନେଭିଗେଟର କ୍ଷେତ୍ରରେ ଗୋଟିଏ ବଡ଼ ଡାହାଣମୁହାଁ ତୀର) କ୍ଲିକ୍ କରି ପୁଣି ଆଗକୁ ଯାଇପାରିବ। ତୁମେ ଯଦି ତୁମର ମାଉସ ଦର୍ଶିକାକୁ ଫରୱାର୍ଡ ବୋତାମ ବା ଆଗୁଆ ତୀର ଉପରେ ରଖିବ, ତେବେ ଆସିବାକୁ ଥିବା ପୃଷ୍ଠାର ଶିରୋନାମା କ୍ଷଣକ ପାଇଁ ଦିଶିବ।
- କିମ୍ବା ମେନୁବାରରେ ଗୋ ଉପରେ କ୍ଲିକ୍ କର। ତୁମେ ଦେଖିଥିବା ସ୍ଥଳୀଗୁଡ଼ିକର ତାଲିକା ଏହା ଦେଖାଇବ। ଏଥିରୁ ତୁମ ପସନ୍ଦର ସ୍ଥଳୀରେ କ୍ଲିକ୍ କଲେ ସେହି ଜାଗାକୁ ଫେରିଯିବ। ଅନେକ ଥର ଫର୍‌ୱାର୍ଡ ବୋତାମ ବା ଆଗୁଆ ତୀର ଉପରେ କ୍ଲିକ୍ କରିବା ସହିତ ଏହା ସମାନ। ଏହା ପରେ ତୁମେ ଫରୱାର୍ଡ ବୋତାମ ଉପରେ ମଧ୍ୟ କ୍ଲିକ୍ କରିପାରିବ। ଇଣ୍ଟରନେଟ ଏକ୍ସପ୍ଲୋରର କ୍ଷେତ୍ରରେ ତୁମେ ବୁଲିଥିବା ଶେଷ କେତେ ପୃଷ୍ଠାର ତାଲିକା ଦେଖିବା ପାଇଁ ବ୍ୟାକ୍ ବା ଫରୱାର୍ଡ ବୋତାମ ପାଖରେ ଥିବା ଛୋଟ ତଳମୁହାଁ ତୀରକୁ କ୍ଲିକ୍ କର।

* **ନୂଆ ପୃଷ୍ଠାକୁ ଯିବା –**

ନେଟସ୍କେପ ନେଭିଗେଟରରେ ନୂଆପୃଷ୍ଠାକୁ ଯିବା ପାଇଁ ପାଦଗୁଡିକ ହେଲା:

୧. ଫାଇଲ ମେନୁରୁ 'ଓପେନ ପେଜ' ନିର୍ଦ୍ଦେଶ ବାଛିକରି ନେଭିଗେଟର ବୋତାମକୁ କ୍ଲିକ୍ କର।

୨. ନୂଆ ୟୁଆର୍ଏଲ୍‌କୁ ଟାଇପ୍ କର ଏବଂ ତାପରେ 'ଓପେନ' କ୍ଲିକ୍ କର।

**ସର୍ଟକଟ:** ବ୍ରାଉଜର ଝରକାର ଠିକଣା (ଲୋକେସନ ବା ନେଟ୍‌ସାଇଟ୍) ଜାଗାରେ କ୍ଲିକ୍‌କରି ୟୁଆରଏଲ ଟାଇପ କର ଓ ପ୍ରବେଶ ଚାବି ଚିପ।

ତୁମେ ଯଦି ପୂରା ୟୁଆରଏଲ ଜାଣିନାହଁ ତେବେ ତାହାର କିଛି ଅଂଶ ଟାଇପ କରିପାର, ଯଥା, 'ଆପଲ୍' (www.apple.com)। ନଚେତ 'ଫୁଲ' ବା 'ବହି' ଭଳି କୌଣସି ସାଧାରଣ ଶବ୍ଦ ଟାଇପ କର। ତୁମେ କେଉଁ ପୃଷ୍ଠା ଦେଖିବାକୁ ଚାହୁଁଛ ତାହା ନେଭିଗେଟର ଅନୁମାନ କରି ଠିକଣା ଯୋଡ଼ିଦିଏ ବା ତୁମ ଶବ୍ଦ ସମ୍ପର୍କିତ କିଛି ସଂଯୋଗର ତାଲିକା ସହ ପୃଷ୍ଠାଟିଏ ଦେଖାଏ।

* **ସଂଯୋଗ ଜରିଆରେ ନୂଆ ପୃଷ୍ଠାକୁ ଯିବା –**

୧. ପୃଷ୍ଠା ଉପରେ ଦର୍ଶିକାକୁ ଚଲାଇଲେ କେତେ ଜାଗାରେ ତାହା ହାତ ଭଳି ରୂପକୁ ବଦଳିଯିବ। କୌଣସି ସଂଯୋଗ ଉପରେ ପହଞ୍ଚିଲେ ଏପରି ଘଟିଥାଏ।

୨. ସେହି ସଂଯୋଗକୁ ଥରେ କ୍ଲିକ୍ କର। ନେଟୱର୍କ ସଂଯୋଗ ସୂଚାଉଥିବା ପୃଷ୍ଠାକୁ ଠାବ କରିବାକୁ ଚେଷ୍ଟା କରୁଥିଲାବେଳେ ଝରକାର ତଳପଟରେ ଚାଲିଥିବା କାମର ସୂଚନା (ଷ୍ଟେଟସ୍) ମିଳିଥାଏ।

* **ୱେବପୃଷ୍ଠା କାମ କରୁନଥିଲେ କ'ଣ କରିବ –**

କୌଣସି ପୃଷ୍ଠା ଖୋଲିବାପାଇଁ ବହୁତ ସମୟ ନେଉଥିଲେ ଷ୍ଟପ ବୋତାମ କ୍ଲିକ୍ କର। ୱେବପୃଷ୍ଠା ପ୍ରଦର୍ଶିତ ହୋଇପାରିବ ନାହିଁ ବୋଲି ଏକ ସନ୍ଦେଶ ଯଦି ତୁମେ ପାଉଛ ବା ତୁମେ ଯଦି ନିଶ୍ଚିତ ହେବାକୁ ଚାହଁ ଯେ ପୃଷ୍ଠାର ନୂତନତମ ଅବସ୍ଥା ତୁମେ ଦେଖୁଛ, ତେବେ ରିଫ୍ରେସ/ରିଲୋଡ ବୋତାମକୁ ଦବାଅ।

* **ତୁମେ ଚାହୁଁଥିବା ସୂଚନା ଖୋଜିବା –**

ୱେବରେ ଥିବା ବିଭିନ୍ନ ସୂଚନା ଅନେକ ବାଟରେ ତୁମେ ପାଇପାରିବ। ଏକ୍ସପ୍ଲୋରର ଟୁଲବାରରେ ଥିବା ସର୍ଚ୍ଚ ବୋତାମ କ୍ଲିକ୍ କରି ସର୍ଚ୍ଚ କଥୋପକଥନ ବାକ୍ସକୁ ଯାଅ। ସେହିଠାରେ 'ୱେବପୃଷ୍ଠା ଖୋଜ', 'ଠିକଣା ଖୋଜ', 'ବ୍ୟବସାୟ ଖୋଜ' *(ଫାଇଣ୍ଡ ଏ ୱେବପେଜ୍, ଫାଇଣ୍ଡ ଏ ପରସନ୍‌ସ୍ ଏଡ୍ରେସ୍, ଫାଇଣ୍ଡ ଏ ବିଜିନେସ୍)* ଇତ୍ୟାଦି ଖୋଜିବାର ପ୍ରକାର ବାଛ ଏବଂ ଖୋଜିବା ପାଇଁ ଉପଯୁକ୍ତ ଶବ୍ଦ ଯୋଗାଇ ସର୍ଚ୍ଚ ବୋତାମ ଦବାଅ। ଇଣ୍ଟରନେଟ ଏକ୍ସପ୍ଲୋରର ତାହାର ପୂର୍ବରୁ ନିର୍ଦ୍ଧାରିତ ସର୍ଚ୍ଚ ଇଞ୍ଜିନ ବ୍ୟବହାର କରି ଖୋଜିବା ଆରମ୍ଭ କରେ। ତୁମେ କୌଣସି ୱେବପୃଷ୍ଠାକୁ ଗଲାପରେ ସେହି ପୃଷ୍ଠାରେ ନିର୍ଦ୍ଦିଷ୍ଟ ପାଠ ଖୋଜିବା ପାଇଁ ଏଡିଟ୍ ମେନୁରେ 'ଫାଇଣ୍ଡ ଫର୍ ଦିସ୍ ପେଜ' କ୍ଲିକ୍‌କରି ଖୋଜିବା ଶବ୍ଦ ଯୋଗାଅ।

ଯଦି ଗୋଟିଏ ୱେବ ଠିକଣା କାମ କରୁନାହିଁ ସେହିଭଳି ଅନ୍ୟ କିଛି ଠିକଣା ଖୋଜିବାକୁ ତୁମେ ଚାହଁ କି ବୋଲି ଇଣ୍ଟରନେଟ ଏକ୍ସପ୍ଲୋରର ତୁମକୁ ପଚାରେ। ତୁମେ ଚାହିଁଲେ ଏହି ବ୍ୟବସ୍ଥାକୁ ବଦଳାଇ ପାରିବ, ଯେପରି ତୁମକୁ ନପଚାରି ଇଣ୍ଟରନେଟ ଏକ୍ସପ୍ଲୋରର ଆପେ ଆପେ ବିକଳ୍ପ ଠିକଣା ଖୋଜିନେବ।

* **ଗୋଟିଏ ପୃଷ୍ଠାରେ ନିର୍ଦ୍ଦିଷ୍ଟ ଶବ୍ଦ ଖୋଜିବା –**

ୱେବପୃଷ୍ଠାରେ କିଛି ନିର୍ଦ୍ଦିଷ୍ଟ ଶବ୍ଦ ଖୋଜି ବାହାର କରିବା ବଡ଼ କଷ୍ଟର କଥା ହୋଇଥାଏ। ଏହି ଖୋଜିବା ପ୍ରକ୍ରିୟାରେ ନେଭିଗେଟର ସାହାଯ୍ୟ କରେ। 'ଫାଇଲ' ମେନୁର 'ଫାଇଣ୍ଡ ପେଜ୍' ବିକଳ୍ପ ବାଛିକରି ତୁମେ

ଚାହୁଁଥିବା ଶବ୍ଦ ଟାଇପ କର। ସେହି ଶବ୍ଦ ଯେଉଁଠି ପ୍ରଥମେ ରହିଛି, ତୁମେ ସେଠାକୁ ଚାଲିଯିବ।

**★ ତୁମର ପ୍ରିୟ ୱେବସାଇଟର ବୁକ୍ ମାର୍କିଙ୍ଗ –**

କୌଣସି ୱେବପୃଷ୍ଠାକୁ ତୁମେ ପରେ ଫେରିବାକୁ ଚାହୁଁଥିଲେ ସେହି ପୃଷ୍ଠାର ୟୁଆର୍‌ଏଲ୍ ତୁମର ବୁକ୍‌ମାର୍କ ତାଲିକାରେ ଯୋଡ଼ିଦିଅ। ନେଟସ୍କେପ ନେଭିଗେଟର ଏହାକୁ ବୁକ୍‌ମାର୍କିଙ୍ଗ (ପୃଷ୍ଠାଚିହ୍ନ ଦେବା) କହିଥାଏ, କିନ୍ତୁ ଇଣ୍ଟରନେଟ ଏକ୍ସପ୍ଲୋରର ତାହାକୁ 'ସେଟିଙ୍ଗ ଫେଭରାଇଟ୍‌ସ' (ପ୍ରିୟ ଚିହ୍ନଟ) ନାଁରେ ଜାଣେ। ପରେ ତୁମେ ଏଥିରୁ କୌଣସି ପୃଷ୍ଠାକୁ ଫେରିବାକୁ ଚାହିଁଲେ ନେଟସ୍କେପ ନେଭିଗେଟରରେ ବୁକ୍‌ମାର୍କସ ବାଛ ଓ ବାହାରୁଥିବା ତାଲିକାରେ ତୁମର ଦରକାରୀ ପୃଷ୍ଠାରେ ମାଉସ ଦବାଅ।

*★ ବୁକମାର୍କସ୍ ସୃଷ୍ଟି କରିବାର ଧାରା ହେଉଛି –*

– ଯେଉଁ ୱେବପୃଷ୍ଠାକୁ ତୁମେ ବୁକ୍‌ମାର୍କ କରିବାକୁ ଚାହଁ, ତୁମେ ସେହି ପୃଷ୍ଠାକୁ ଯାଅ।

– 'ନେଟସାଇଟ୍' ଶବ୍ଦର ବାମକୁ ଥିବା ଆଇକନ୍ ଉପରେ ଦର୍ଶିକା ରଖିଲେ କ୍ଷଣକପାଇଁ ସନ୍ଦେଶ ଆସିବ *'ଏହି ପୃଷ୍ଠାସହିତ ସଂଯୋଗ ସୃଷ୍ଟି କରିବା ପାଇଁ ଏହାକୁ ଟାଣ'*।

– ବାମ ମାଉସ୍ ବୋତାମକୁ ଚିପିଧରି ଏହି ଆଇକନ୍‌ଠାରୁ ବ୍ୟକ୍ତିଗତ ଉପକରଣ ପଟି *(ପରସନାଲ୍ ଟୁଲ୍‌ବାର)* ଉପରକୁ ଦର୍ଶିକାକୁ ଚଲାଅ *(ଡ୍ରାଗ)*। ତୁମର ବୁକ୍‌ମାର୍କ ସୃଷ୍ଟି ହୋଇଗଲା।

*★ ଏହା କରିବାର ଆଉ ଗୋଟିଏ ବାଟ ହେଉଛି –*

– ବୁକ୍‌ମାର୍କ କରିବାକୁ ଚାହୁଁଥିବା ୱେବପୃଷ୍ଠାକୁ ଯାଅ।

– 'ବୁକ୍‌ମାର୍କ' ଉପରେ କ୍ଲିକ୍ କର।

– ବୁକ୍‌ମାର୍କ ଯୋଡ଼ିଦିଅ (ଆଡ୍ ବୁକ୍‌ମାର୍କ) ନିର୍ଦ୍ଦେଶ ବାଛ।

ପ୍ରଦର୍ଶିତ ପୃଷ୍ଠାର ନାଁ ବୁକମାର୍କ ତାଲିକାର ଶେଷରେ ଯୋଡ଼ିହୋଇଯାଏ। କିଛି ବଛା ବଛା ବୁକମାର୍କ ତୁମର ନେଟ୍‌ସ୍କେପ କାରିକା ସହିତ ଆସିଥାଏ। ଇଣ୍ଟରନେଟ ଏକ୍ସପ୍ଲୋରର ଟୁଲବାର ଉପରେ ଥିବା ଫେଭରାଇଟସ୍ (ପ୍ରିୟ) ବୋତାମକୁ ଦବାଇଲେ ବିଭିନ୍ନ ବିକଳ୍ପର ଏକ ତାଲିକା ବାହାରିବ। ତୁମର ପୃଷ୍ଠାଚିହ୍ନ ପାଇଁ ସେଥିରୁ ଉପଯୁକ୍ତ ବିଭାଗ ବାଛିନିଅ।

ଏବେ ଦେଖିଥିବା ତାଲିକାରୁ ଗୋଟିଏ ୱେବପୃଷ୍ଠା ବାଛିବା ପାଇଁ 'ହିଷ୍ଟୋରି' (ଇତିହାସ) ବୋତାମ କ୍ଲିକ୍ କର। ଇତିହାସ ତାଲିକାରେ ତୁମେ ଆଗରୁ ଦେଖିଥିବା ଫାଇଲ ଓ ଫୋଲଡର ସବୁର ସୂଚନା ରହିଥାଏ।

*★ କୌଣସି ବୁକ୍‌ମାର୍କକୁ ତୁମେ ମଧ୍ୟ କାଟିଦେଇ ପାରିବ। ଏଥିପାଇଁ –*

– ବୁକ୍‌ମାର୍କ ଉପରେ କ୍ଲିକକର ବା 'ଏଡିଟ୍' ମେନୁରୁ ବୁକ୍‌ମାର୍କ ବାଛ।

– ତୁମେ କାଟିବାକୁ ଚାହୁଁଥିବା ବୁକ୍‌ମାର୍କ ଉପରେ ମାଉସ୍ କ୍ଲିକକରି ହାଇଲାଇଟ କର।

– ତୁମ କି ବୋର୍ଡର 'ଡିଲିଟ' ଚାବି ଚିପ।

**★ ଗୋଟିଏ ପୃଷ୍ଠାର କିଛି ଅଂଶ ନକଲ କରିବା –**

ଆମେ ଗୋଟିଏ ପୃଷ୍ଠାର କିଛି ଅଂଶ ନକଲ କରି ଏହାକୁ ଅନ୍ୟ ଏକ ଦଲିଲରେ ବ୍ୟବହାର କରିପାରିବା। ଏଥିପାଇଁ ପାଦଗୁଡିକ ହେଲା –

– ପାଠ୍ୟକୁ ଚିହ୍ନିତ (ସିଲେକ୍‌ଟ) କର।

– ଏଡିଟ ମେନୁର ନକଲ (କପି) ବାଛ।

ତୁମେ ତା'ପରେ ସେହି ପାଠ୍ୟକୁ ଅନ୍ୟ ଫାଇଲରେ ଯୋଡ଼ିପାରିବ (ପେଷ୍ଟ)।

ଗୋଟିଏ ପୃଷ୍ଠାର ସଂଯୋଗକୁ (ୟୁଆରଏଲ)କୁ ନକଲ କରିବା –

– ସଂଯୋଗ ବା ଚିତ୍ର ଉପରେ ଡାହାଣ-କ୍ଲିକ୍ କର। ଗୋଟିଏ ପପ୍-ଅପ୍ ମେନୁ ବାହାରିବ।

– ସେଥିରେ 'ସଂଯୋଗସ୍ଥଳୀ ନକଲ' (*କପି ଲିଙ୍କ ଲୋକେସନ*) ବା 'ଚିତ୍ରସ୍ଥଳୀ ନକଲ' (*କପି ପିକ୍‌ଚର ଲୋକେସନ*) ବିକଳ୍ପ ଦେଖାଯିବ। ସଂଯୋଗଟି ଯଦି ଗୋଟିଏ ଚିତ୍ର ହୋଇଥାଏ ତେବେ ତୁମକୁ ଉଭୟ ବିକଳ୍ପ ମିଳିବ। ନକଲ କଲାପରେ ତୁମେ ସେହି ସଂଯୋଗକୁ ଅନ୍ୟ ଫାଇଲରେ ବା ନେଭିଗେଟରର ଠିକଣା (*ଲୋକେସନ*) ଜାଗାରେ ଯୋଡ଼ିପାରିବ।




ଡାହାଣ-କ୍ଲିକ୍‌ରୁ ଆସୁଥିବା ପପ୍-ଅପ୍ ମେନୁ

* ୱେବ ପୃଷ୍ଠାର ମୁଦ୍ରଣ –

କୌଣସି ପୃଷ୍ଠାର ଛପା ନକଲ (*ହାର୍ଡ କପି*) ରଖିବା ଦରକାର ହେଉଥିଲେ ଆମେ ତାହାକୁ ଆମ ମୁଦ୍ରଣୀରେ ଛପାଇ ପାରିବା। ଉଭୟ ଇଣ୍ଟରନେଟ ଏକ୍ସପ୍ଲୋରର ଓ ନେଟସ୍କେପ ନେଭିଗେଟରରେ ଏହା କରିବାର ଧାରା ହେଉଛି –

– ଫାଇଲ୍ ମେନୁରେ 'ମୁଦ୍ରଣ' (*ପ୍ରିଣ୍ଟ*) ନିର୍ଦ୍ଦେଶ ବାଛ।

– ତୁମେ ଚାହୁଁଥିବା ମୁଦ୍ରଣ ପାଇଁ ବିଭିନ୍ନ ବିକଳ୍ପ (*ଅପ୍‌ସନ*) ବାଛିନିଅ।

– ଓକେ କ୍ଲିକ୍ କର।

ମୁଦ୍ରିତ ପୃଷ୍ଠା କିପରି ଦେଖାଯିବ ଆଗରୁ ତାହା ଜାଣିବା ପାଇଁ 'ପ୍ରିଣ୍ଟ ପ୍ରିଭିୟୁ' ବାଛ। 'ଫ୍ରେମ' ଥିବା ପୃଷ୍ଠାକୁ ଛପାଇବାକୁ ଚାହୁଁଥିଲେ ଫାଇଲ ମେନୁର *ପ୍ରିଣ୍ଟ* ବଦଳରେ *ପ୍ରିଣ୍ଟ ଫ୍ରେମ* ନିର୍ଦ୍ଦେଶ ବାଛ।

* *ଛପା ପୃଷ୍ଠାର ରୂପ (ପେଜ୍ ଲେଆଉଟ) ନିର୍ଦ୍ଦିଷ୍ଟ କରିବାର ଧାରା ହେଉଛି* –

– ଫାଇଲ ମେନୁରେ *ପ୍ରିଣ୍ଟ* ବାଛ।

– 'ପୃଷ୍ଠା ରୂପ' *(ପେଜ ସେଟଅପ)* ଡାଏଲଗ ବାକ୍ସରେ ପୃଷ୍ଠାର ଶୀର୍ଷକ *(ହେଡର)* ଓ ଶେଷଲେଖା *(ଫୁଟର)* ଏବଂ ପୃଷ୍ଠାର ମାପ ଆଦି ବିଷୟରେ ସୂଚନା ଭରିଦିଅ।

– ଶେଷରେ ଓକେ କ୍ଲିକ୍‌କର।

ୱେବପୃଷ୍ଠାର *ଫ୍ରେମ୍* ବା ଚିତ୍ର ଭଳି ଅନ୍ୟ କିଛି ଜିନିଷ ମୁଦ୍ରଣ କରିବାପାଇଁ ତାହା ଉପରେ ଡାହାଣ–କ୍ଲିକ୍ କର ଏବଂ *ପ୍ରିଣ୍ଟ* ବା *ପ୍ରିଣ୍ଟ ଫ୍ରେମ* ବିକଳ୍ପରେ କ୍ଲିକ୍ କର।

* ତୁମ କମ୍ପ୍ୟୁଟରରେ ୱେବପୃଷ୍ଠାକୁ କେମିତି ଗଚ୍ଛିତ କରିବ –

କୌଣସି ୱେବପୃଷ୍ଠା ଦେଖିଲାବେଳେ ତୁମେ ହୁଏତ କିଛି ସୂଚନା ପାଇବ ଯାହାକୁ ଭବିଷ୍ୟତ ବ୍ୟବହାର ପାଇଁ ବା ଅନ୍ୟ କାହାକୁ ଦେବାପାଇଁ ସାଇତି ରଖିବାକୁ ଚାହିଁବ। ପୁରା ୱେବପୃଷ୍ଠା ବା ପାଠ୍ୟ, ଚିତ୍ର ବା ସଂଯୋଗ ଭଳି ଏହାର କିଛି ନିର୍ଦ୍ଦିଷ୍ଟ ଅଂଶକୁ ତୁମ କମ୍ପ୍ୟୁଟରରେ ଗଚ୍ଛିତକରି ରଖିହେବ।

* *ୱେବପୃଷ୍ଠା ରଖିବାପାଇଁ ପାଦ ଗୁଡିକ ହେଲା* –

– ଫାଇଲ୍‌ମେନୁରେ 'ଗଚ୍ଛିତ କର' *(ସେଭ୍ ଆଜ୍)* ବାଛ.

– ତୁମେ ଯେଉଁ ଫୋଲଡରରେ ପୃଷ୍ଠାକୁ ସାଇତିବା ପାଇଁ ଚାହୁଁଚ, ତାହାକୁ ଡବଲ କ୍ଲିକ୍ କର.

– ଫାଇଲ ନାମ ବାକ୍ସରେ ପୃଷ୍ଠାପାଇଁ ନାମଟିଏ ଟାଇପକର।

– ଫାଇଲ ପ୍ରକାର *(ସେଭ୍ ଆଜ୍ ଟାଇପ)* ବାକ୍ସରେ ଉପଯୁକ୍ତ କିସମ ବାଛିନିଅ।

– ସେହି ପୃଷ୍ଠାକୁ ତାହାର ମୂଳ ରୂପରେ ଦେଖାଇବା ପାଇଁ ଚିତ୍ର, ଫ୍ରେମ୍, ଷ୍ଟାଇଲ ସିଟ୍ ଆଦି ସବୁ ଦରକାରୀ ଫାଇଲକୁ ସାଇତିବା ପାଇଁ 'ସମ୍ପୂର୍ଣ୍ଣ ୱେବପୃଷ୍ଠା' *(ୱେବପେଜ୍ କମ୍ପ୍ଲିଟ)* ବିକଳ୍ପ ବାଛ। ଏହି ବିକଳ୍ପ ପ୍ରତ୍ୟକ ଫାଇଲକୁ ତାହାର ମୂଳ ରୂପରେ ସାଇତି ରଖେ।

– କେବଳ ଅତିରଚନା ବା ଏଚଟିଏମ୍‌ଏଲ୍ ରୂପରେ ଥିବା ତଥ୍ୟ ସାଇତିବା ପାଇଁ 'ୱେବପୃଷ୍ଠା, କେବଳ ଏଚ.ଟି.ଏମ.ଏଲ.' *(ୱେବପେଜ୍, ଏଚ.ଟି.ଏମ.ଏଲ. ଓନଲି)* ବିକଳ୍ପ ବାଛ। ଏହି ବିକଳ୍ପ ୱେବପୃଷ୍ଠାରେ ଥିବା ସୂଚନାକୁ ସାଇତି ରଖେ କିନ୍ତୁ ଚିତ୍ର, ଧ୍ୱନି ବା ଅନ୍ୟ ଫାଇଲ ରଖେନାହିଁ।

– ୱେବପୃଷ୍ଠାରୁ କେବଳ ପାଠ୍ୟକୁ ସାଇତିବାପାଇଁ *'ଟେକ୍ସଟ ଫାଇଲ'* ଉପରେ କ୍ଲିକ୍ କର। ଏହି ବିକଳ୍ପ ୱେବପୃଷ୍ଠାରେ ଥିବା ସୂଚନାକୁ ସାଧାରଣ ପାଠ୍ୟ ରୂପରେ ସାଇତି ରଖେ।

* *ୱେବପୃଷ୍ଠାରୁ କୌଣସି ଚିତ୍ରକୁ ସାଇତିବାପାଇଁ ପାଦଗୁଡିକ ହେଲା* –

– ଚିତ୍ର ଉପରେ ଡାହାଣ–କ୍ଲିକ୍ କର ଓ ବାହାରୁଥିବା ମେନୁରେ *'ସେଭ ଇମେଜ ଆଜ୍'* ବିକଳ୍ପରେ ଚିତ୍ରର ବିବରଣୀ ଯୋଗାଅ। ନେଟସ୍କେପ ନେଭିଗେଟରରେ ଫ୍ରେମ ଥିବା ପୃଷ୍ଠାରେ ଫ୍ରେମଟି ଚିହ୍ନିତ (ସିଲେକ୍ଟ) ହୋଇଥିଲେ ଫାଇଲ୍ ମେନୁରେ *'ସେଭ ଆଜ୍'* ସହିତ *'ସେଭ ଫ୍ରେମ ଆଜ'* ବିକଳ୍ପ ମଧ୍ୟ ମିଳିଥାଏ। *'ସେଭ ଫ୍ରେମ ଆଜ'* ବାଛିଲେ କେବଳ ଫ୍ରେମ ଭିତରେ ଥିବା ପୃଷ୍ଠାଟି ଗଚ୍ଛିତହୁଏ।

* ୱେବପୃଷ୍ଠାକୁ ଶୀଘ୍ର ଦେଖାଇବାପାଇଁ ଚିତ୍ର ବନ୍ଦକରିବା –

ଚିତ୍ରଗୁଡ଼ିକ ୱେବପୃଷ୍ଠାର ପ୍ରଦର୍ଶନ (ଡାଉନ୍ ଲୋଡିଙ୍ଗ/ଡିସ୍‌ପ୍ଲେ)କୁ ଧୀର କରିଦିଏ। ପ୍ରଦର୍ଶନକୁ ତ୍ୱରାନ୍ୱିତ କରିବା ପାଇଁ ଆମେ ଚିତ୍ରର ପ୍ରଦର୍ଶନ ବନ୍ଦକରି ପାରିବା। ଏଥିପାଇଁ ଇଣ୍ଟରନେଟ ଏକ୍ସପ୍ଲୋରର କ୍ଷେତ୍ରରେ

ପାଦଗୁଡିକ ହେଲା –

– ଟୁଲସ୍ ମେନୁର 'ଇଣ୍ଟରନେଟ୍ ଅପ୍‌ସନ୍‌ସ' ବିକଳ୍ପରେ କ୍ଲିକ୍ କର।

– ତାହାର ଆଡଭାନ୍‌ସ୍‌ଡ୍ ଟ୍ୟାବରେ କ୍ଲିକ୍ କର।

– ମଲ୍‌ଟିମିଡିଆ କ୍ଷେତ୍ରରେ 'ଚିତ୍ର, ସଜୀବନ (ଆନିମେସନ୍) ବା ଭିଡିଓ ଦେଖାଅ' ବା 'ଧ୍ୱନି ଶୁଣାଅ' ଭଳି ଏକ ବା ଅଧିକ ସୂଚକ ବାକ୍ସରୁ ଚିହ୍ନ କାଢ଼ିଦିଅ।

'ଚିତ୍ର ବା ଭିଡିଓ ଦେଖାଅ' ସୂଚକ ବାକ୍ସରୁ ଚିହ୍ନ କଢ଼ା ହୋଇଯାଇଥିଲେ ବି ତୁମେ କିଛି ନିର୍ଦ୍ଦିଷ୍ଟ ଚିତ୍ର ବା ସଜୀବନ ୱେବପୃଷ୍ଠାରେ ପ୍ରଦର୍ଶିତ କରିପାରିବ। ସେଥିପାଇଁ ଦେଖିବାକୁ ଥିବା ଚିତ୍ର ଆଦିର ଆଇକନ୍‌କୁ ଡାହାଣ–କ୍ଲିକ୍ କର ଓ 'ଚିତ୍ର ଦେଖାଅ' (*ସୋ ପିକ୍‌ଚର*) ନିର୍ଦ୍ଦେଶ ବାଛ।

'ଚିତ୍ର ଦେଖାଅ' ସୂଚକ ବାକ୍ସରେ ଚିହ୍ନ ନଥିଲେ ମଧ୍ୟ ୱେବପୃଷ୍ଠାରେ ଯଦି ଚିତ୍ର ଦିଶୁଥିବ, ତେବେ 'ପ୍ରଦର୍ଶନ' (*ଭିୟୁ*) ମେନୁର 'ସତେଜନ' (*ରିଫ୍ରେସ୍*) ବିକଳ୍ପରେ କ୍ଲିକ୍ କଲେ ତୁମେ ତାହାକୁ ଲୁଚାଇପାରିବ।

* ନୂଆ ବ୍ରାଉଜର୍ ଉଇଣ୍ଡୋ ଖୋଲିବା –

– ଫାଇଲ ମେନୁର 'ନୂଆ ବ୍ରାଉଜର ୱିଣ୍ଡୋ ଖୋଲ' (*ଓପନ ନିଉ ବ୍ରାଉଜର ୱିଣ୍ଡୋ*) ନିର୍ଦ୍ଦେଶ ଜରିଆରେ ବ୍ରାଉଜରର ଅଧିକ ନକଲ ଖୋଲିପାରିବ ଏବଂ ଏକ ସମୟରେ ଏକାଧିକ ୱେବପୃଷ୍ଠା ଖୋଲିପାରିବ।

* ମୂଳପୃଷ୍ଠା ବଦଳାଇବା –

ତୁମର ବ୍ରାଉଜର ଖୋଲିଲାବେଳେ ଯେଉଁ ପୃଷ୍ଠାଟି ଆପେ ଆପେ ପ୍ରଦର୍ଶିତ ହୋଇଥାଏ ତାହା ହେଉଛି ତୁମର ମୂଳପୃଷ୍ଠା। ତୁମେ ତୁମ ପସନ୍ଦର କୌଣସି ନିର୍ଦ୍ଦିଷ୍ଟ ପୃଷ୍ଠାକୁ ତୁମର ମୂଳପୃଷ୍ଠା କରିପାରିବ।

* *ଇଣ୍ଟରନେଟ ଏକ୍ସପ୍ଲୋରରରେ ତାହାର ଧାରା ହେଉଛି* –

– ସେହି ପୃଷ୍ଠାକୁ ଯାଅ।

– ଟୁଲ୍‌ସ ମେନୁରେ ଇଣ୍ଟରନେଟ୍ ବିକଳ୍ପକୁ କ୍ଲିକ୍ କର।

– ଜେନେରାଲ୍ ଟ୍ୟାବ୍‌କୁ କ୍ଲିକ୍ କର।

– ମୂଳପୃଷ୍ଠା ଜାଗାରେ 'ବର୍ତ୍ତମାନର ପୃଷ୍ଠା' (ୟୁଜ୍ କରେଣ୍ଟ) ବିକଳ୍ପ ବାଛ। ଆଗରୁ ରହିଥିବା ମୂଳପୃଷ୍ଠାକୁ ଫେରିଯିବାପାଇଁ 'ପୂର୍ବନିର୍ଦ୍ଦିଷ୍ଟ ବ୍ୟବହାର କର' (ୟୁଜ୍ ଡିଫଲ୍‌ଟ) ଉପରେ କ୍ଲିକ୍ କର।

* *ନେଟସ୍କେପ ନେଭିଗେଟରରେ କୌଣସି ନିର୍ଦ୍ଦିଷ୍ଟ ପୃଷ୍ଠାକୁ ମୂଳପୃଷ୍ଠା କରିବାର ପାଦଗୁଡ଼ିକ ହେଲା* –

– ସେହି ନିର୍ଦ୍ଦିଷ୍ଟ ପୃଷ୍ଠାକୁ ଖୋଲ.

– ଏଡିଟ୍ ମେନୁରୁ 'ପ୍ରିଫରେନ୍‌ସେସ୍' ବାଛ.

– ନେଭିଗେଟର ବିଭାଗ ଉପରେ କ୍ଲିକ୍ କର.

– ଖୋଲାଥିବା ପୃଷ୍ଠାକୁ ତୁମର ମୂଳପୃଷ୍ଠା କରିବାପାଇଁ 'ଖୋଲାପୃଷ୍ଠାକୁ ବ୍ୟବହାର କର' (*ୟୁଜ୍ କରେଣ୍ଟ ପେଜ୍*) କ୍ଲିକ୍ କର। *ଲୋକେଟର* ବାକ୍ସରେ ସେହି ପୃଷ୍ଠାର ୟୁଆରଏଲ ମଧ୍ୟ ତୁମେ ଦେଇପାର।

– ଶେଷରେ ଓକେ କ୍ଲିକ୍ କର।

* *ମୂଳପୃଷ୍ଠା ବଦଳରେ ଅନ୍ୟ ଆରମ୍ଭ ପୃଷ୍ଠା ବାଛିବା* –

– ଏଡିଟ୍ ମେନୁରୁ 'ପସନ୍ଦ' (*ପ୍ରିଫରେନ୍‌ସେସ୍*) ବାଛ.

– ନେଭିଗେଟର ବିଭାଗ ଉପରେ କ୍ଲିକ୍ କର.

– 'ନେଭିଗେଟର ଆରମ୍ଭହେବ' (*ନେଭିଗେଟର ଷ୍ଟାର୍ଟସ୍ ୱିଥ୍*) ବିକଳ୍ପ ବାଛିନିଅ।

## ଷଷ୍ଠ ଅଧ୍ୟାୟ

# ଇଣ୍ଟରନେଟରେ ଖୋଜିବା

ଇଣ୍ଟରନେଟରେ ବିପୁଳ ପରିମାଣର ସୂଚନା ରହିଛି। ତେଣୁ ଆମେ ଚାହୁଁଥିବା ସୂଚନା ନିଶ୍ଚିତ ଭାବରେ କେତୋଟି ୱେବସ୍ଥଳୀରେ ରହିଥିବ। କିନ୍ତୁ ଆମେ ଯଦି ଏହି ୱେବସ୍ଥଳୀମାନଙ୍କର ନାମ ଜାଣିନଥିବା ସେଠାରେ ପହଞ୍ଚିବା କିପରି? ଅବଶ୍ୟ ଗୋଟିଏ ବିକଳ୍ପ ହେଲା ଇଣ୍ଟରନେଟ ବାଣିଜ୍ୟ ପଞ୍ଜିକା *(ୟେଲୋପେଜ୍ ଡାଇରେକ୍ଟୋରି)*ରେ ଖୋଜିକରି ସମ୍ଭାବ୍ୟ ୱେବସ୍ଥଳୀର ଠିକଣା ଆଣିବା ଏବଂ ସେହି ସ୍ଥଳୀଗୁଡ଼ିକୁ ଯାଇ ଆମ ଚାହିଦାର ସୂଚନା ସେଠାରେ ରହିଛି କି ନାହିଁ ତାହା ଦେଖିବା। ପ୍ରତି ୱେବସ୍ଥଳୀରେ ବହୁ ସଂଖ୍ୟକ ପୃଷ୍ଠା ରହିଥାଏ ଏବଂ ବିଭିନ୍ନ ସଂଯୋଗ ଜରିଆରେ କ୍ଲିକ୍ କରି ଉପଯୁକ୍ତ ପୃଷ୍ଠାରେ ପହଞ୍ଚିବା ଏତେ ସହଜ କାମ ନୁହେଁ। ତେଣୁ ଏହି ଖୋଜିବା ପ୍ରକ୍ରିୟାରେ ସାହାଯ୍ୟ କରିବାପାଇଁ 'ସନ୍ଧାନୀ କଳ' ବା *ସର୍ଚ୍ଚ ଇଞ୍ଜିନ* ନାମରେ କିଛି ବିଶେଷ କାରିକା ଏବେ ମିଳୁଛି।

ସନ୍ଧାନୀ କଳଗୁଡ଼ିକ ୱେବରେ ଥିବା ବିଭିନ୍ନ ଦଲିଲ ବିଷୟରେ ସୂଚନା ସଂଗ୍ରହ କରି ନିଜର ତଥ୍ୟାଧାର ତିଆରି କରନ୍ତି। ତୁମେ ଖୋଜୁଥିବା କୌଣସି ଶବ୍ଦକୁ ସେହି ତଥ୍ୟାଧାର ସହିତ ମିଳାଇକରି ସେହି ଶବ୍ଦ ରହିଥିବା ଦଲିଲଗୁଡ଼ିକର ସଂଯୋଗ ଯୋଗାଇଦିଅନ୍ତି। ତୁମର ଖୋଜିବା ସହିତ ଯେଉଁ ଦଲିଲ ଅଧିକ ମେଳ ଖାଉଛି ବୋଲି ସନ୍ଧାନୀ କଳ ଭାବିଥାଏ ତାହାକୁ ସଂଯୋଗ ତାଲିକାର ଉପର ଆଡ଼କୁ ରଖିଥାଏ।

ଅଲଗା ଅଲଗା ବାଟରେ କାମ କରୁଥିବା ଅନେକ ପ୍ରକାରର ସନ୍ଧାନୀ କଳ ଏବେ ଆମ ପାଖରେ ରହିଛି। ଏଥିରୁ କେତେକରେ ମଣିଷମାନେ ଲାଗିକରି ୱେବସ୍ଥଳୀ ଓ ୱେବପୃଷ୍ଠା ସବୁର ତାଲିକା ତିଆରି କରନ୍ତି। ଆଉ କିଛି ସନ୍ଧାନୀ କଳ ବିଭିନ୍ନ କାରିକା ସାହାଯ୍ୟରେ ୱେବସ୍ଥଳୀଗୁଡ଼ିକରେ ଥିବା ସୂଚନାକୁ ଚିହ୍ନଟ କରନ୍ତି। ଆଉ କିଛି ସନ୍ଧାନୀ କଳ ମଣିଷ ଓ କାରିକା ଉଭୟର ସାହାଯ୍ୟନେଇ ତାଙ୍କର ଖୋଜିବା କାମ ଚଳାନ୍ତି। ତେଣୁ ଯେତେବେଳେ ତୁମେ ସେମାନଙ୍କର ତଥ୍ୟ ସଂଗ୍ରହରେ କିଛି ଖୋଜିଥାଅ ତୁମକୁ ଅଲଗା ଅଲଗା ଫଳ ମିଳିଥାଏ। ବିଭିନ୍ନ ସନ୍ଧାନୀ କଳ ଅଲଗା ଅଲଗା ବାଟରେ ସଂଗୃହିତ ତଥ୍ୟର ସୂଚୀ ତିଆରି କରନ୍ତି। ଗୋଟିଏ ସନ୍ଧାନୀ କଳ ହୁଏତ ବିଭିନ୍ନ ଦଲିଲର ଶିରୋନାମାଗୁଡ଼ିକୁ ସଜାଇ ରଖିପାରେ, କିନ୍ତୁ ଅନ୍ୟ କେଉଁ କଳରେ ଦଲିଲ ଶିରୋନାମା ସହିତ ବିଭିନ୍ନ ସଂଯୋଗ ଓ ବିଷୟବସ୍ତୁ ଉପରେ କିଛି ସୂଚକ ଶବ୍ଦ ରହିଥାଇପାରେ।

### *କେଉଁ ସନ୍ଧାନୀ କଳକୁ କାମରେ ଲଗାଇବା?*

କୌଣସି ଗୋଟିଏ ସନ୍ଧାନୀ କଳକୁ ପସନ୍ଦ କରିବା ପାଇଁ ଅନେକଗୁଡ଼ିଏ କାରଣ ରହିଥାଏ। ସହଜ ବ୍ୟବହାର ଧାରା, ଖୋଜିହେଉଥିବା ତଥ୍ୟାଧାରର ଆକାର, ତଥ୍ୟାଧାର ସହିତ ମିଳୁଥିବା ଅନ୍ୟ ସୂଚନାର ପ୍ରକାର, ଏପରିକି ତାହା କିପରି ଦେଖାଯାଏ ସେସବୁ ପସନ୍ଦର କାରଣରୁ କିଛି। ତେଣୁ ତୁମର ନିର୍ଦ୍ଦିଷ୍ଟ

ଆବଶ୍ୟକତାକୁ ଆଗିରେ ରଖି ତୁମେ ଅନ୍ୟମାନଙ୍କ ତୁଳନାରେ କୌଣସି ଗୋଟିଏ ସନ୍ଧାନୀ କଳକୁ ଅଧିକ ପସନ୍ଦ କରିପାର। ଉଦାହରଣ ସ୍ୱରୂପ, ଡାଇରେକ୍‌ଟୋରି ଭିତ୍ତିକ ଖୋଜିବା କାମ ପାଇଁ ତୁମେ ୟାହୁ! ସନ୍ଧାନୀ କଳକୁ ବାଛିଲାବେଳେ ସାଧାରଣ ଖୋଜା ପାଇଁ ଇନଫୋସିକ କଳକୁ ବ୍ୟବହାର କରିପାର।

କୌଣସି ସନ୍ଧାନୀ କଳ ଇଣ୍ଟରନେଟର ସବୁ ତଥ୍ୟର ସୂଚନା ରଖିପାରେ ନାହିଁ। ଏପରିକି *ଏମଏସଏନ ୱେବ ସର୍ଚ୍ଚ, ଆଲଟାଭିଷ୍ଟା, ଇନଫୋସିକ, ଲାଇକୋସ* ଏବଂ *ସ୍ନାପ* ଭଳି ପ୍ରମୁଖ ସନ୍ଧାନୀ କଳ ମଧ୍ୟ ତୁମକୁ ସବୁ ତଥ୍ୟ ଦେଇପାରିବେ ନାହିଁ। କିଛି ଅନୁଧ୍ୟାନରୁ ଜଣାପଡ଼େ ଯେ ମୁଖ୍ୟ ସର୍ଚ୍ଚ ଇଞ୍ଜିନଗୁଡ଼ିକ ମଧ୍ୟ ଇଣ୍ଟରନେଟରେ ଥିବା ତଥ୍ୟର ଅଧା ବି ଯୋଗାଇପାରନ୍ତି ନାହିଁ। ତେଣୁ କେଉଁ ସନ୍ଧାନୀ କଳ ତୁମର ଚାହିଦାର ଫଳାଫଳ ଅଧିକ ଯୋଗାଇପାରୁଛି ତାହା ଜାଣିବା ପାଇଁ ବିଭିନ୍ନ ଇଞ୍ଜିନକୁ କାମରେ ଲଗାଇ ପରୀକ୍ଷାକର। ତୁମେ ଚାହୁଁଥିବା ଫଳାଫଳ ଯଦି ଗୋଟିଏ ଇଞ୍ଜିନରେ ନମିଳେ ତେବେ ଅନ୍ୟ କେଉଁ ସନ୍ଧାନୀ କଳରେ ଚେଷ୍ଟା କର।

*ବିଭିନ୍ନ ସନ୍ଧାନୀ କଳ*

କେତୋଟି ଲୋକପ୍ରିୟ ସନ୍ଧାନୀ କଳ ସହିତ ତୁମକୁ ପରିଚିତ କରିବା ପାଇଁ ତାଙ୍କର ସଂକ୍ଷିପ୍ତ ବିବରଣୀ ତଳେ ଦିଆଯାଇଛି।

**ଏମଏସଏନ ୱେବ ସର୍ଚ୍ଚ (www.msn.com):** ଏହାର ସର୍ଚ୍ଚ ପୃଷ୍ଠା ଜରିଆରେ ତୁମେ ଏକ ମୌଳିକ ୱେବ ସର୍ଚ୍ଚ ବା ଏକ ଉନ୍ନତ ସର୍ଚ୍ଚ କରିପାରିବ। ଏଥିପାଇଁ ତୁମକୁ ନିର୍ଦ୍ଦିଷ୍ଟ କରିବାକୁ ହେବ – ସୂଚନାର ପ୍ରକାର, ଭାଷା, ଉତ୍ପତ୍ତି, ପରିସର *(ଡୋମେନ)*, ତାରିଖ ଏବଂ ୱେବପୃଷ୍ଠାରେ ଥିବା ଫାଇଲର ପ୍ରକାର।

**ଆଲ୍‌ଟାଭିଷ୍ଟା (www.altavista.com):** ଆଲ୍‌ଟାଭିଷ୍ଟାରେ ତୁମେ କୌଣସି ସୂଚକ ଶବ୍ଦ ଖୋଜିପାରିବ କିମ୍ବା ସେହି ତଥ୍ୟକୁ ଗୋଟିଏ ପ୍ରଶ୍ନ ରୂପରେ ପଚାରିପାରିବ। କୌଣସି ଜଟିଳ ଖୋଜିବା କାମରେ ଏହା ଭଲ ଫଳ ଦେଇଥାଏ ଏବଂ ସେହି ତଥ୍ୟ ଉପରେ ହଜାର ହଜାର ଦଲିଲର ସୂଚନା ଯୋଗାଏ। ଏହାର ଅନ୍ୟ କିଛି ବିଶେଷତ୍ୱ ହେଉଛି – *'ବେବେଲଫିସ'* ଯାହା ବିଭିନ୍ନ ଭାଷାରେ ଅନୁବାଦ ଯୋଗାଏ, *'ଫଟୋଫାଇଣ୍ଡର'* ଯାହା ଚିତ୍ର ଖୋଜିଆଣେ, *'ଫାମିଲି ଫିଲ୍‌ଟର'* ଯାହା ତୁମେ ଖୋଜୁଥିବା ସୂଚନାର ପ୍ରକାରକୁ ସୀମିତ ରଖେ।

**ଇନ୍‌ଫୋସିକ୍ (www.infoseek.com):** ୱେବସ୍ଥଳୀମାନଙ୍କର ଏକ ବ୍ୟାପକ ତାଲିକା ହେଉଛି ଇନଫୋସିକ ସର୍ଚ୍ଚ ଇଂଜିନର ବିଶେଷତା। ଏହା ଦାବୀକରେ ଯେ ତାହା ପାଖରେ ୱେବର ସବୁଠାରୁ ବଡ଼ ଡାଇରେକ୍‌ଟୋରି ରହିଛି। ଏହାର 'ସ୍ମାର୍ଟ ଇନ୍‌ଫୋ' ବ୍ୟକ୍ତି ଠିକଣା ପୃଷ୍ଠା *(ହ୍ୱାଇଟ ପେଜେସ)*, ବାଣିଜ୍ୟ ପୃଷ୍ଠା *(ୟେଲୋ ପେଜେସ)*, ଇ–ଡାକ ଠିକଣା, କମ୍ପାନୀ ପରିଚିତି, ପୁଞ୍ଜିଲଗାଣ ସୂଚନା ଓ ମୂଲ୍ୟସୂଚୀ *(ଷ୍ଟକ କୋଟ୍‌ସ)*, ଅଭିଧାନ, ସମାର୍ଥ ଶବ୍ଦକୋଷ, ମାନଚିତ୍ର ଏବଂ ଡାଇରେକ୍‌ଟୋରି ଆଦିର ସଂଯୋଗ ଯୋଗାଏ। ଏହାର ବ୍ୟକ୍ତିଗତ ସମ୍ବାଦ ସେବା ନିଜ ପସନ୍ଦର ଟେଲିଭିଜନ କାର୍ଯ୍ୟକ୍ରମ ଓ ସିନେମା ତାଲିକା, ସ୍ଥାନୀୟ ପାଣିପାଗ, ବ୍ୟକ୍ତିଗତ ପୁଞ୍ଜିଲଗାଣ ମୂଲ୍ୟସୂଚୀ ଆଦି ଯୋଗାଇଦିଏ। *'ନେଟ୍‌ଲୁକ୍ ଇଭେଣ୍ଟସ୍'* ଇଣ୍ଟରନେଟର ଘଟଣା ସବୁର ସର୍ବଶେଷ ସୂଚନା ଯୋଗାଏ।

ଉପରର ସାଧନଗୁଡ଼ିକ ଛଡ଼ା ଇନ୍‌ଫୋସିକର ଆହୁରି କେତେ ବିଶେଷତା ରହିଛି। ପ୍ରଥମରେ ଅନ୍ୟ ସନ୍ଧାନୀ କଳ ସବୁର ତୁଳନାରେ ଏହାର ପ୍ରଶ୍ନ କରିବା ଭାଷା ସରଳ। ଦ୍ୱିତୀୟରେ ଇନ୍‌ଫୋସିକ ପ୍ରକୃତରେ ଦୁଇଟି ସ୍ତରରେ ଖୋଜୁଥିବା ଦୁଇଟି ଅଲଗା ସର୍ଚ୍ଚ ଇଂଜିନର ସୁବିଧା ଦେଇଥାଏ। ଏହି ଦୁଇଟି ଭିତରୁ *'ଅଲ୍‌ଟ୍ରାସ୍ମାର୍ଟ'* କଳ ପ୍ରତି ଫଳାଫଳ ପୃଷ୍ଠାର ଶେଷରେ ଗୋଟିଏ ବାକ୍ସ ଯୋଗାଏ ଯାହା ସାହାଯ୍ୟରେ ସେହି ଫଳାଫଳକୁ ଆହୁରି ନିର୍ଦ୍ଦିଷ୍ଟ କରିହୁଏ।




(www.go.com)

**ଲାଇକୋସ୍ (www.lycos.com):** ଉଲ୍ଫ୍ ବୁଡ଼ିଆଣିର ଲାଟିନ ନାମର ପ୍ରଥମ ପାଞ୍ଚ ଅକ୍ଷରରୁ ଏହାର ନାଁ ବାହାରିଛି। ଯୁକ୍ତରାଷ୍ଟ୍ର ଆମେରିକାର କାର୍ନେଗି ମେଲନ ବିଶ୍ୱବିଦ୍ୟାଳୟରେ ଏହାର ଉତ୍ପତ୍ତି। ୬.୫ କୋଟି ପୃଷ୍ଠାର ସୂଚନା ଥିବା ତାହାର ତଥ୍ୟାଧାରରେ ଏହା ସରଳ ଶବ୍ଦଭିତ୍ତିକ ଖୋଜା ଏବଂ କିଛି ବୁଲିଏନ ତର୍କ ଆଧାରିତ ଖୋଜିବା କାମର ସୁବିଧା ଯୋଗାଏ। ସନ୍ଧାନ ପ୍ରକ୍ରିୟାର ଫଳାଫଳକୁ ପ୍ରାସଙ୍ଗିତା ଅନୁସାରେ ସଜାଇକରି ଏହା ଦେଖାଏ। ଲାଇକୋସ୍‌ରେ ସମ୍ବାଦ, ୱେବସ୍ଥଳୀ ସମୀକ୍ଷା, ବ୍ୟକ୍ତି ସନ୍ଧାନ ଏବଂ ଚିତ୍ର ଓ ଧ୍ୱନି ଖୋଜିବାର ସୁବିଧା ମଧ୍ୟ ମିଳିଥାଏ।

**ନେଟଗାଇଡ୍ ଲାଇଭ (www.netguide.com):** ଏହି ସନ୍ଧାନୀ କଳରେ ୱେବ ସମୀକ୍ଷାର ସ୍ୱାଦ ରହିଥାଏ। 'ନେଟ ପାଇଁ ତୁମର ନିତିଦିନିଆ ଦିଗ୍‌ଦର୍ଶକ' (*ଇଓର ଡେଲି ଗାଇଡ୍ ଟୁ ଦି ନେଟ*) ନାମରେ ପ୍ରଚାରିତ ଏହି ସନ୍ଧାନୀ କଳ ନେଟଗାଇଡ୍ ବିଭିନ୍ନ ୱେବସ୍ଥଳୀର ସମୀକ୍ଷା କରିବା, 'ବିଖ୍ୟାତ ବ୍ୟକ୍ତିଙ୍କ ସହ ଆଳାପ' ଭଳି ସମକାଳୀନ (*ଲାଇଭ*) ନେଟ କାର୍ଯ୍ୟକ୍ରମର ସୂଚନା ଯୋଗାଇବା, ଉଚ୍ଚକୋଟିର ସମକାଳୀନ ନେଟ କାର୍ଯ୍ୟକ୍ରମ ପାଇଁ ପୁରସ୍କାର ଦେବା ଭଳି ସୁବିଧା ଯୋଗାଇଥାଏ।

ନେଟଗାଇଡ୍‌ରେ ସନ୍ଧାନୀ କଳର ପୂର୍ବନିର୍ଦ୍ଧାରିତ (ଡିଫଲ୍ଟ) କାର୍ଯ୍ୟଧାରା ହେଉଛି ସେମାନଙ୍କ ଦ୍ୱାରା '*ୱେବର ସର୍ବୋତ୍କୃଷ୍ଟ*' ଭାବରେ ବଛାଯାଇଥିବା ସ୍ଥଳୀଗୁଡ଼ିକର ତଥ୍ୟାଧାରକୁ ଖୋଜିବା। ଏହି ତଥ୍ୟାଧାରର ଆକାର ବେଶ୍ ବଡ଼ ଏବଂ ଲଗାତାର ସମୀକ୍ଷାର ଫଳରୁ ତାହା ବଢ଼ିଚାଲିଛି।

*ସ୍ନାପ (www.snap.com):* ସ୍ନାପ ହେଉଛି ତାହାର କର୍ମୀଦଳଙ୍କ ଦ୍ୱାରା ବଛାଯାଇଥିବା ୱେବସ୍ଥଳୀଗୁଡ଼ିକର ଗୋଟିଏ ଡାଇରେକ୍ଟୋରି। ଏହି ଡାଇରେକ୍ଟୋରିରେ ୱେବସ୍ଥଳୀଗୁଡ଼ିକୁ ବିଷୟ ଅନୁସାରେ ଭାଗ କରାଯାଇଥାଏ

ଏବଂ ସେସବୁର ସାରାଂଶ ଦିଆଯାଇଥାଏ। ପ୍ରତ୍ୟେକ ବିଷୟ ବିଭାଗ ଭିତରେ ୱେବସ୍ଥଳୀଗୁଡ଼ିକୁ ତାଙ୍କର ନିର୍ଦ୍ଦିଷ୍ଟ ବିଷୟ ଅନୁସାରେ ସଜାଇ ରଖାଯାଏ। ନିର୍ଦ୍ଦିଷ୍ଟ ସୂଚନା ଖୋଜିବାରେ ଏହା ବିଶେଷ ଭାବରେ ସାହାଯ୍ୟ କରେ। ସବୁଠାରୁ ଭଲ ମନେକରୁଥିବା ସ୍ଥଳୀଗୁଡ଼ିକୁ ସ୍ନାପ 'ସର୍ବୋତ୍କୃଷ୍ଟ' (ବେଷ୍ଟ) ଚିତ୍ରସଙ୍କେତରେ ଚିହ୍ନିତ କରେ।

ଏକ୍ସାଇଟ (www.excite.com): ବଡ଼ ୱେବ ତଥ୍ୟାଧାର ଭିତରୁ ଗୋଟିଏ ଭାବରେ ଗଣା ହେବା ପାଇଁ ଏକ୍ସାଇଟ ପ୍ରଚୁର ପରିମାଣର ସମ୍ବାଦ ଏବଂ ୱେବ ପାର୍ଶ୍ୱମାନଙ୍କର ସମୀକ୍ଷା ଯୋଗାଇଥାଏ। ପସନ୍ଦ ଅନୁସାରେ ବଦଳାଯାଇ ପାରୁଥିବା (*କଷ୍ଟମାଇଜେବଲ*) 'ଏକ୍ସାଇଟ ସୂଚନା ଧାରା' (*ଚାନେଲ୍ସ ବାଇ ଏକ୍ସାଇଟ*) ପୃଷ୍ଠାରେ କଳା ଓ ଆମୋଦପ୍ରମୋଦରୁ ଆରମ୍ଭ କରି ସ୍ୱାସ୍ଥ୍ୟ ଓ ବିଜ୍ଞାନ, ସମ୍ବାଦ, ରାଜନୀତି ଏବଂ ଖେଳ ଆଦି ବିଷୟ ଉପରେ ସୂଚନା ରହିଥାଏ।

ବ୍ୟକ୍ତି ଖୋଜାଳୀ, ବାଣିଜ୍ୟ ପୃଷ୍ଠା, ଇ-ଡାକ ସଂଗ୍ରହ, ସ୍ୱଳ୍ପମୂଲ୍ୟ କାରିକା (*ସେୟାରୱେୟାର*) ଏବଂ ମାନଚିତ୍ର ଭଳି ବିଶେଷ ସୁବିଧା ପାଇଁ ଏହା ସଂଯୋଗ ଯୋଗାଇଥାଏ। ପୃଥିବୀର ୪୦୦୦ ସହର ବିଷୟରେ ସୂଚନାର ଗୋଟିଏ ତଥ୍ୟାଧାର ହେଉଛି ତାହାର 'ସିଟି ନେଟ'।

ଏକସାଇଟ ସର୍ଚ୍ଚ ଇଂଜିନ ଦୁଇଟି ସ୍ତରରେ କାମକରେ। ପ୍ରଥମ ସ୍ତରଟି ହେଉଛି ସାଧାରଣ ଶବ୍ଦମେଳକ ଧାରା। ଦ୍ୱିତୀୟ ସ୍ତରରେ ତାହା ଏକ ସୂକ୍ଷ୍ମ ଧାରାରେ କାମକରେ ଯେଉଁଠି ଏହା ସୂଚକ ଶବ୍ଦର ଭାବକୁ ବ୍ୟାଖ୍ୟାକରେ ଏବଂ ତୁମର ଧାରଣା ସହିତ ମେଳକ ଖୋଜିବାର ଚେଷ୍ଟାକରେ।

ହଟ୍‌ବଟ୍ (www.hotbot.com): *ୱାଏର୍ଡ* (wired) ପତ୍ରିକା ଦ୍ୱାରା ଆରମ୍ଭ କରାଯାଇଥିବା ହଟ୍‌ବଟ୍ ହେଉଛି ପୂରା ରୂପରେ ଏକ ସନ୍ଧାନୀ କଳ ଏବଂ ଏହା ଖୁବ୍ ଶକ୍ତିଶାଳୀ। ଅନ୍ୟମାନଙ୍କ ତୁଳନାରେ ଏହାର ରୂପ ଖୁବ ଚକଚକିଆ। ଖୋଜିବା କାମକୁ ଅଧିକ ନିର୍ଦ୍ଦିଷ୍ଟ କରିବା ପାଇଁ ଏହାର ଅନ୍ତରାପୃଷ୍ଠ 'ପ୍ରଦର୍ଶିତ ବିକଳ୍ପରୁ ବାଛିବା' (*ପଏଣ୍ଟ ଆଣ୍ଡ କ୍ଲିକ୍*) ସୁବିଧା ଯୋଗାଇଥାଏ। ଏହା ସାହାଯ୍ୟରେ ଖୋଜିଲେ ବେଶ୍ ଅଧିକ ସଂଖ୍ୟାର ମେଳକ ବାହାରିଥାଏ।




ହଟବଟ (www. hotbot.com) ସନ୍ଧାନୀ କଳର ମୂଳପୃଷ୍ଠା।

**ୟାହୁ! (www.yahoo.com):** ଏହି ନାଁର ପୂରା ରୂପ ହେଉଛି Yet Another Hierachically Officious Oracle। ଏହା ଏକ ପ୍ରକୃତ ସନ୍ଧାନୀ କଳ ନୁହେଁ, ବରଂ ଗୋଟିଏ ଡାଇରେକ୍ଟୋରି ଅଟେ। ମଣିଷମାନେ ୱେବସ୍ଥଳୀର ସମୀକ୍ଷା କରି ବିଷୟ ଅନୁସାରେ ଏଥିରେ ସଜାଇରଖନ୍ତି ଏବଂ ତାହା ଭିତରେ ଏହା ଖୋଜିବା କାମ କରିଥାଏ। ତେଣୁ ଏଥିରେ ମିଳୁଥିବା ଫଳାଫଳର ପରିମାଣ କମ ହୋଇଥାଏ। କିନ୍ତୁ ବିଷୟ ବିଭାଗରେ ଖୋଜିବା କାମକୁ ୟାହୁ! ସହଜ କରିଦିଏ। ତୁମେ ଚାହୁଁଥିଲେ ଏଥିରେ ବିଷୟ ଖୋଜିବା ପରେ ଅନ୍ୟ ସନ୍ଧାନୀ କଳ ସାହାଯ୍ୟରେ ଅଧିକ ଖୋଜିପାରିବ। ଏହା ମାଗଣା ଇ-ଡାକ ସୁବିଧା ଏବଂ ଅନ୍ୟ କେତେ ପ୍ରକାରର ସେବା ମଧ୍ୟ ଯୋଗାଇଥାଏ।

**ୱେବକ୍ରଲର (www.webcrawler.com):** ଏହା ହେଉଛି ଗୋଟିଏ ଡାଇରେକ୍ଟୋରି ଓ ସନ୍ଧାନୀ କଳର ମିଶ୍ରଣ ଯାହା ତୁମକୁ ୱେବର ଅଳିଆରେ ଲୁଚି ରହିଥିବା କେତେକ ଭଲ ଜିନିଷ ପାଇବାରେ ସାହାଯ୍ୟ କରିଥାଏ। ସମୀକ୍ଷିତ ୱେବସ୍ଥଳୀଗୁଡ଼ିକ ଉପରେ ଏହା ବେଶୀ ଜୋର ଦେଇଥାଏ। ଏହାର ମୂଳପୃଷ୍ଠା *'ମ୍ୟାପ୍ କ୍ୱେଷ୍ଟ'* (www.mapquest.com) ସାହାଯ୍ୟରେ ସକ୍ରିୟ ମାନଚିତ୍ର ଏବଂ 'ହୁ ହ୍ୱେୟାର୍' (www.whowhere.com) ଜରିଆରେ ବ୍ୟକ୍ତି ଠିକଣା ତାଲିକା (*ହ୍ୱାଇଟ ପେଜେସ୍*) ଓ ଇ-ଡାକ ପଞ୍ଜିକା ଯୋଗାଇଥାଏ ଏବଂ ସେସବୁ ସହିତ ବ୍ୟାପକ ଶ୍ରେଣୀଭୁକ୍ତ ବିଜ୍ଞାପନ ମଧ୍ୟ ମାଗଣାରେ ଦେଇଥାଏ। ଡେଜା ନିଉଜ, ଏକ୍ସାଇଟ ଭଳି ଅନ୍ୟ ଅନେକ ସେବା ପ୍ରତି ସଂଯୋଗ ମଧ୍ୟ ଏଥିରେ ରହିଥାଏ।

**ଆସ୍କ ଜିଭ୍ସ (www.aj.com):** ଏଠାରେ ତୁମେ ସାଧାରଣ ଭାଷାରେ କିଛି ପ୍ରଶ୍ନ ଲେଖିପାରିବ ଏବଂ 'ପଚାର' (ଆସ୍କ) ବୋତାମରେ କ୍ଲିକ୍ କରିବ। ଏହା ନିଜର ତଥ୍ୟାଧାରରେ ଖୋଜି ତୁମ ପ୍ରଶ୍ନର ଉତ୍ତର ଯୋଗାଇଦେବ। *ପୁଲଡାଉନ* ମେନୁ ଜରିଆରେ ଏହା ଅନ୍ୟ ସର୍ଚ୍ଚ ଇଞ୍ଜିନମାନଙ୍କପାଇଁ ସଂଯୋଗ ଯୋଗାଇଦିଏ। ଏହିଭଳି କାମକରୁଥିବା ଆଉ ଗୋଟିଏ ସର୍ଚ୍ଚ ଇଞ୍ଜିନ ହେଉଛି *ଇନ୍ଫର୍ମେସନ୍ ପ୍ଲିଜ୍* (ଦୟାକରି ସୂଚନାଦିଅ – www.infoplease.com)।

Ask Jeeves Home | Shopping | Answer Point | Help

Ask Jeeves

Have a Question? Just type it in and click Ask!

Ask Jeeves' Vital Guide to Valentine's Day

Recent questions about Society:

Where can I learn about the Igbo culture?

Featuring sites ranked by popularity

Care to explore these areas of interest?

Arts & Entertainment, Business, Computers, Games, Health, Home & Family, News, Recreation, Reference, Regional, Science, Society, Sports, Travel, World

Favorite destinations:

- Ask Jeeves Kids
- Ask Jeeves UK
- Ask Jeeves Studios
- Jeeves Peek
- Shopping

ଆସ୍କ ଜିଭ୍ସ (www.aj.com) ୱେବସ୍ଥଳୀରେ ସାଧାରଣ ଭାଷାରେ ପ୍ରଶ୍ନ ପଚରାଯାଇପାରେ।

**ମେଟାକ୍ରଲର (www.metacrawler.com):** ୱେବସ୍ଥଳୀଗୁଡ଼ିକର କୌଣସି ତଥ୍ୟାଧାର ଏହା ନିଜେ ରଖେନାହିଁ। ବରଂ ତୁମର ଖୋଜିବା କାମପାଇଁ ଏହା ଏକ ସମୟରେ ଏକସାଇଟ, ଇନଫୋସିକ, ଲାଇକୋସ୍, ଏବଂ ୟାହୁ! ଭଳି ଅନେକ ସର୍ଚ୍ଚ ଇଞ୍ଜିନର ସାହାଯ୍ୟ ନେଇଥାଏ। ଗୋଟିଏ ସର୍ଚ୍ଚ ଇଞ୍ଜିନ ବ୍ୟବହାର କରିବା ତୁଳନାରେ ଏଥିରେ ଅଧିକ ସମୟ ଲାଗେ, କିନ୍ତୁ ଏହାର ଫଳାଫଳ ବ୍ୟାପକ ହୋଇଥାଏ।

**ନର୍ଦର୍ନ ଲାଇଟ (www.northernlight.com):** ଅନ୍ୟ ସବୁ ସନ୍ଧାନୀ କଳ ତୁଳନାରେ ଏହା ତୁମର ଖୋଜିବାର ଫଳାଫଳକୁ ଏକ ଭିନ୍ନ ବାଟରେ ଯୋଗାଏ। ତୁମେ ଖୋଜୁଥିବା ଶବ୍ଦ ବା ବାକ୍ୟାଂଶର ମେଳକଗୁଡ଼ିକୁ ଏହା ବିଭିନ୍ନ ଫୋଲଡରରେ ସଜାଇରଖେ। ଏହି ସବୁ 'କଷ୍ଟମ ସର୍ଚ୍ଚ ଫୋଲଡର' ଭିତରୁ ସବୁଠାରୁ ଭଲ ମେଳକ ମନେ ହେଉଥିବା ଫୋଲଡରକୁ ଖୋଲିକରି ତୁମେ ଦେଖିପାରିବ।

ପ୍ରମୁଖ ସନ୍ଧାନୀ କଳଗୁଡ଼ିକ ସାଧାରଣ ଖୋଜିବା କାମଠାରୁ ବେଶ୍ ଅଧିକ ସୁବିଧା ଯୋଗାଇଥା'ନ୍ତି। ଏହି ସ୍ଥଳୀଗୁଡ଼ିକର ସାହାଯ୍ୟରେ ତୁମେ ତାଜା ଖବର, ସମ୍ବାଦମଞ୍ଚ, ଡିକ୍ସନାରି ବା ମାନଚିତ୍ର ଭଳି ସହାୟକ ସୁବିଧା, ଏବଂ ବିଭିନ୍ନ ବ୍ୟକ୍ତି ଓ ବ୍ୟବସାୟିକ ପ୍ରତିଷ୍ଠାନର ଇ-ଡାକ, ରାସ୍ତା ଠିକଣା ଓ ଟେଲିଫୋନ ନମ୍ବର ଆଦି ପାଇପାରିବ।

**ଭାରତ ସମ୍ବନ୍ଧୀୟ ସର୍ଚ୍ଚ ଇଞ୍ଜିନ:** ଭାରତ ସମ୍ବନ୍ଧୀୟ ସୂଚନା ଖୋଜିବାରେ ଆମକୁ ସାହାଯ୍ୟ କରୁଥିବା କିଛି ସନ୍ଧାନୀ କଳ ହେଉଛନ୍ତି – 123india.com, khoj.com, seekindia.com, jadoo.com, cyberindian.com, hindustan.com, indiaconnect.com, indiasearchengine.com, rediff.com, indiatimes.com, iloveindia.com ଏବଂ indiacentral.com ଇତ୍ୟାଦି।

rediff.com

SEARCH Tips to search 1 billion Web pages! go

Explore the Net in STYLE

Rediff USA | Inside Rediff | Feedback

Get Connected!

Rediffmail @rediffmail.com User Name Password NOW! e-mail in हिन्दी, தமிழ், etc
New user? Sign Up | Forgot password?
Chat | Messenger | E-Cards | Homepages
Build a Homepage; Get Creative!
Also Connect With
• Matchmaker • Rediff Mobile • Rediff on • E-Newsletter

Today's Headlines 19 February 2001, 22:50 IST

- 'The VHP has Responsible Leaders'
- 'I Have My Work Cut Out'
- 'We Are Behind Sabrina 100 Per Cent'
- Russian Naval Chief Calls for Greater Co-operation
- A Tragedy Waiting to Happen
- On the Sets of *Yeh Raaste Hai Pyaar Ke*
- 2 Pak Warplanes Enter Indian Air Space
- Three Policemen Killed in Ambush in Sopore

More • News • Newslinks • Tech News • Cricket • Sports
Editions: Hindi • Tamil • Telugu • Gujarati • Rediff USA

SPECIAL 'Our Lives Will Never be the Same' | SLIDE SHOW The Mighty...

Shopping & Gifting

TOP HOTSELLERS • Apparels • Watches • Indian Sweets • Jewellery
STORES • Hamaracd • Online Varsity
FEATURED • Art • Old/New Cars
AUCTIONS • HP Scanner • DVD Rom
PICK UP • Books • Music
More Shopping and Gifting!

Cool Links
• Glittering Heart's Special
• Get a Great LifesMe

rediff.com ୱେବସ୍ଥଳୀର ଭାରତ ସମ୍ବନ୍ଧୀୟ ସର୍ଚ୍ଚ ଇଞ୍ଜିନ

*ଖୋଜିବାର ଧାରା*

ଆମ ଆଗ୍ରହର ଫାଇଲ ବା ପାଠ୍ୟ ଖୋଜିବାପାଇଁ ତଳର ଧାରାରେ ଆଗେଇବାକୁ ହେବ।

- ଉପରେ ଦିଆଯାଇଥିବା ଯେ କୌଣସି ସର୍ଚ୍ଚ ଇଞ୍ଜିନ ଚଳାଅ। ଉଦାହରଣ ସ୍ୱରୂପ, ୟାହୁ! ଚଳାଇବା ପାଇଁ ବ୍ରାଉଜରର ଠିକଣା ପଟିରେ 'www.yahoo.com' ଟାଇପ କର ଓ ପ୍ରବେଶ ଚାବି ଚିପ।
- ଏହା ସେହି ସର୍ଚ୍ଚ ଇଞ୍ଜିନର ମୂଳପୃଷ୍ଠା ଖୋଲିଦେବ। ସେଥିରେ ଥିବା ପାଠ୍ୟ ବାକ୍ସ *(ଟେକ୍ସଟ ଏଣ୍ଟ୍ରି ବକ୍ସ)* ଦେହରେ ଖୋଜିବାକୁ ଥିବା ବିଷୟ ସୂଚକ ଶବ୍ଦ ବା ବାକ୍ୟାଂଶ ଟାଇପ କର। 'ଖୋଜ' *(ସର୍ଚ୍ଚ)* ବୋତାମରେ କ୍ଲିକ୍ କଲେ ଖୋଜିବା କାମ ଆରମ୍ଭ ହେବ।
- ଖୋଜିବାର ଫଳାଫଳ ଅନେକଗୁଡ଼ିଏ ସଂଯୋଗର ରୂପରେ ଆସିବ। ସେଥିରୁ ଉପଯୁକ୍ତ ସଂଯୋଗରେ କ୍ଲିକ୍ କରି ତୁମେ ସେହି ୱେବସ୍ଥଳୀକୁ ଯାଇପାରିବ।

**ଖୋଜିବାପାଇଁ କିଛି ସହାୟକ ସୂଚନା:** ତୁମେ ଯେଉଁ ସନ୍ଧାନୀ କଳ ବ୍ୟବହାର କରୁଥିଲେ ବି ଖୋଜୁଥିବା ତଥ୍ୟ ପାଇବାରେ ଏହି ସୂଚନାଗୁଡ଼ିକ ସାହାଯ୍ୟ କରିବ।

କ. *ଏକରୁ ଅଧିକ ସର୍ଚ୍ଚ ଇଞ୍ଜିନ ବ୍ୟବହାର କର* – କୌଣସି ଗୋଟିଏ ସନ୍ଧାନୀ କଳ ସବୁ ୱେବସ୍ଥଳୀ ବା ୱେବପୃଷ୍ଠାକୁ ନିଜର ତାଲିକାରେ ରଖିପାରିବନାହିଁ। ତେଣୁ ପ୍ରଥମ ଇଞ୍ଜିନ ସାହାଯ୍ୟରେ ତୁମେ ଚାହୁଁଥିବା ଫଳାଫଳ ନମିଳିଲେ ଅନ୍ତତଃ ଆଉ ଗୋଟିଏ ଅନ୍ୟ ସର୍ଚ୍ଚ ଇଞ୍ଜିନରେ ଖୋଜିବାକୁ ଚେଷ୍ଟାକର।

ଖ. *'ଏବାଉଟ' ପୃଷ୍ଠାଟି ପଢ଼ିନିଅ* – ଅନେକ ସର୍ଚ୍ଚ ଇଞ୍ଜିନ ଗୋଟିଏ ସଂଯୋଗ ଯୋଗାନ୍ତି ଯେଉଁଠାରେ ସେହି ସର୍ଚ୍ଚ ଇଞ୍ଜିନ କିପରି କାମକରେ ସେ ବିଷୟରେ ବିଶଦ ସୂଚନା ରହିଥାଏ। ଏହା କେଉଁ ଧାରାରେ ଖୋଜିଥାଏ ଓ ଖୋଜିବାର ଫଳାଫଳକୁ କିପରି ସଜାଇରଖେ ଏବଂ ଭଲ ଫଳ ପାଇବାକୁ ହେଲେ କ'ଣ କରିବାକୁହେବ ଏସବୁ ବିଷୟରେ ସୂଚନା ସେହି ସଂଯୋଗରେ ମିଳିପାରେ। ତେଣୁ ଏହି ପୃଷ୍ଠାକୁ ପଢ଼ିଲେ ତୁମର ଯଥେଷ୍ଟ ସମୟ ବଞ୍ଚିପାରିବ ଏବଂ ମୁଣ୍ଡବ୍ୟଥା କମିଯିବ। ସନ୍ଧାନୀ କଳର ମୂଳପୃଷ୍ଠାରେ ଥିବା *'ହାଓ ଟୁ'*, *'ସର୍ଚ୍ଚ ହେଲ୍ପ'*, *'ଆଡଭାନ୍ସ୍ଡ ସର୍ଚ୍ଚ'* ଆଦି ନାମରେ ଥିବା ସଂଯୋଗଗୁଡ଼ିକୁ ଦେଖିଲେ ତୁମେ ଖୋଜିବାର ଫଳପ୍ରଦ ଧାରା ବିଷୟରେ ଅଧିକ ବିବରଣୀ ପାଇପାରିବ।

ଗ. *ନିର୍ଦ୍ଦିଷ୍ଟ ହୋଇ ଲକ୍ଷଭେଦୀ ଫଳାଫଳ ପାଅ* – ତୁମର ଖୋଜିବା ଶବ୍ଦ ଯେତେ ନିର୍ଦ୍ଦିଷ୍ଟ ହେବ, ଫଳାଫଳ ସେତିକି ଲକ୍ଷଭେଦୀ ହେବ। ଉଦାହରଣ ସ୍ୱରୂପ 'କୁକୁର' ଶବ୍ଦ ବଦଳରେ ଯଦି 'ଡାହାଳ କୁକୁର' ଶବ୍ଦଗୁଡ଼ିକ ଖୋଜିବ ତେବେ ତୁମକୁ ଅଳ୍ପ ସଂଖ୍ୟାର ୱେବସ୍ଥଳୀ ମିଳିବ, କିନ୍ତୁ ସେସବୁରେ ତୁମ ଆଗ୍ରହର କଥା ବେଶୀ ରହିଥିବ।

ଘ. *ସାଧାରଣ ଶବ୍ଦରୁ ଅଧିକ ଫଳ ପାଅ* – ତୁମର ଖୋଜିବା ଶବ୍ଦ ଯଦି ଅତି ନିର୍ଦ୍ଦିଷ୍ଟ ହୋଇଥାଏ ତେବେ ତୁମକୁ ଖୁବ ଅଳ୍ପ ବା ଶୂନ ଫଳ ମିଳିପାରେ। ଅଧିକ ଫଳ ପାଇବା ପାଇଁ ମୂଳ ଶବ୍ଦ ସହିତ ସମ୍ପର୍କ ଥିବା କିଛି ସାଧାରଣ ଶବ୍ଦପାଇଁ ଖୋଜିବାକୁ ଚେଷ୍ଟାକର।

ଙ. *ବୁଲିଏନ ସଂକାରକ (ଅପରେଟର) ବ୍ୟବହାର କରି ତୁମର ଖୋଜିବାକୁ ନିର୍ଦ୍ଦିଷ୍ଟ କର* – ପ୍ରମୁଖ ସନ୍ଧାନୀ କଳଗୁଡ଼ିକ ଖୋଜିବା କାମରେ ତୁମକୁ ଅନେକ ବିକଳ୍ପ ଯୋଗାଇଥା'ନ୍ତି। ତୁମେ ଖୋଜୁଥିବା ବାକ୍ୟାଂଶର ସମ୍ପୂର୍ଣ୍ଣ ମେଳକ ଦରକାର ବା ସେଥିରେ ଥିବା କିଛି ଶବ୍ଦର ମେଳକ ହେଲେ ଚଳିବ ବା ଯେକୌଣସି ଶବ୍ଦର ମେଳକ କାମଦେବ ତାହା ତୁମେ ନିର୍ଦ୍ଦିଷ୍ଟ କରିପାରିବ। କେତୋଟି ସର୍ଚ୍ଚ ଇଞ୍ଜିନରେ ଏହି ସୁବିଧା ମିଳିନଥାଏ। ସେହି କ୍ଷେତ୍ରରେ, ତୁମେ 'ଏବଂ' *(ଆଣ୍ଡ)*, 'କିମ୍ବା' *(ଅର୍)*, 'ଏବଂ ନୁହେଁ' (ଆଣ୍ଡ ନଟ୍) ଆଦି ବୁଲିଏନ ସଂକାରକ *(ଅପରେଟର)* ଏବଂ " ", () ଓ * ଭଳି ବିଶେଷ ସଙ୍କେତ ଯୋଡ଼ିକରି

ଖୋଜିବାର ସଂଖ୍ୟା ନିର୍ଦ୍ଦିଷ୍ଟ କରିପାରିବ। ଏଗୁଡ଼ିକୁ ନେଇ କିଛି ପରୀକ୍ଷା କଲେ ସେସବୁ କିପରି କାମକରନ୍ତି ତାହା ଜାଣିହେବ। ଏହାର କିଛି ଉଦାହରଣ ହେଉଛି –

– ସମୁଦ୍ର ଏବଂ (AND) ଡଙ୍ଗା (ଉଭୟ ଶବ୍ଦ ରହିଥିବା ସଂଯୋଗ ଖୋଜିବ)

– ଡଙ୍ଗା କିମ୍ବା (OR) ନାଆ (କୌଣସି ଗୋଟିଏ ଶବ୍ଦ ରହିଥିବା ସଂଯୋଗ ଖୋଜିବ)

– ଡଙ୍ଗା ଏବଂ ନୁହେଁ (AND NOT) ପାଲଟଣା (ପାଲଟଣାକୁ ବାଦଦେଇ ଡଙ୍ଗା ଶବ୍ଦକୁ ଖୋଜିବ)

– "ଭଡ଼ାରେ ଚାଲୁଥିବା ଡଙ୍ଗା" (ପୂରା ବାକ୍ୟାଂଶକୁ ଖୋଜିବ)

– ଡଙ୍ଗା* (ଡଙ୍ଗା ସହିତ ମିଶି ରହିଥିବା ଶବ୍ଦକୁ ମଧ୍ୟ ଖୋଜିବ)

### *ଲୋକଙ୍କୁ ଖୋଜିବା*

ପାଖରେ ଟେଲିଫୋନ ଡାଇରେକ୍ଟୋରି ନଥିଲେ ୱେବରେ ଖୋଜିକରି ତୁମେ କୌଣସି ଲୋକର ଫୋନ ନମ୍ବର କିମ୍ବା ଠିକଣା ପାଇପାରିବ। ୱେବ ଆଧାରିତ ବ୍ୟକ୍ତିଗତ ସୂଚନା ଆସିଥାଏ ସାଧାରଣ ୟେଲୋ ବା ହ୍ୱାଇଟ ପେଜ ଭଳି ସର୍ବସାଧାରଣ ଉତ୍ସରୁ କିମ୍ବା ଲୋକମାନେ ନିଜେ ଯୋଗାଇଥିବା ତଥ୍ୟରୁ।

ଅନେକ ପ୍ରକାରର ବ୍ୟକ୍ତିଗତ ପଂଜିକା ୱେବରେ ମିଳୁଛି। ସେଥିରେ ତୁମେ ଗୋଟିଏ ଲୋକର ଇ–ଡାକ ଠିକଣା, ଫୋନ ନମ୍ବର ବା ଡାକ ଠିକଣା ଖୋଜିପାରିବ।

ଲୋକଙ୍କୁ ଖୋଜିବା ପାଇଁ ଅନେକ ସର୍ଚ୍ଚ ଇଞ୍ଜିନ ରହିଛି। ସେଥିରୁ କିଛି ହେଉଛି – www.bigfoot.com, www.whowhere.lycos.com, www.people.yahoo.com, www.infospace.com ଇତ୍ୟାଦି। www.companiesonline.com ୱେବସ୍ଥଳୀ ବ୍ୟବହାର କରି କୌଣସି ବ୍ୟବସାୟ ପ୍ରତିଷ୍ଠାନ ଖୋଜିହେବ।

LYCOS NETWORK | Lycos Home | Site Map | My Lycos

WhoWhere? ...the way to find people on the web

First Name: | Last Name: | Search Type: -Email- | Search

Advanced Email Search | Advanced Phone Search | Ancestor Search | Public Records

Your Guide to People on the Web

Find Me
Add & Update Listing
More People Searches
Homepages
WhoWhere? Members
Celebrities
Ancestors
3D People Finder
Yellow Pages
Maps & Directions

Create and Share Videos — Click Here

LYCOS PEOPLE GUIDES
People in Entertainment
Filmmakers, Musicians, Athletes
People and Money
Investors, Brokers, Shoppers, Executives
People Like You
Women, Kids, Family, Travelers
People to Help You
Realtors, Career Advisors, Employers
Other Guides to the Web

What's New
Free Email and Voicemail
Create Your Own Digital Videos!
Get Organized! FREE Calendar
Upload and share photos!

ମଣିଷ ଓ ସଂସ୍ଥା ଖୋଜିବା ପାଇଁ 'ହୁ ହ୍ୱେର' ୱେବସ୍ଥଳୀଟି

## ସପ୍ତମ ଅଧ୍ୟାୟ

# ନେଟ୍‌ରେ ସୁରକ୍ଷା ବିଷୟରେ କିଛି

ଇଣ୍ଟରନେଟ ହେଉଛି ଏକ ଆଭାସୀ ଦୁନିଆ। ତାହାର ବିଭିନ୍ନ ସେବା ଓ ସୁବିଧା ଜରିଆରେ ଆମେ ଅନେକ ଲୋକଙ୍କର ସମ୍ପର୍କରେ ଆସିଥାଏ ଯାହାଙ୍କ ସହିତ ଆଗରୁ ଆମର କେବେ ଭେଟହୋଇନଥାଏ। ଏପରିକି ସେମାନେ ନିଜ ବିଷୟରେ ଯେଉଁ ପରିଚୟ ଦେଉଛନ୍ତି ତାହା ସତ କି ମିଛ ସେକଥା ଜାଣିବାର ବାଟ କିଛିନାହିଁ। ବିଶେଷ କରି ଆମେରିକାରେ ଏଭଳି କେତେ ଘଟଣା ଘଟିଛି ଯେଉଁଥିରେ ପିଲାମାନେ ବିକୃତ ବ ଅସୁସ୍ଥ ମାନସିକତାର ଲୋକଙ୍କର ପ୍ରକୃତ ପରିଚିତି ନଜାଣି ଟାଙ୍କ ସହିତ ମିଶିଯାଇଛନ୍ତି। କିଛି ସମୟର ଆଭାସୀ ବନ୍ଧୁତା ପରେ ଏବଂ ସେମାନଙ୍କର ଲୋଭନୀୟ ନିମନ୍ତ୍ରଣରେ କିଛି ସନ୍ଦେହ ନକରି ସେମାନଙ୍କୁ ଭେଟିବାକୁ ଯାଇଛନ୍ତି। ଏହାର ଫଳାଫଳ ଅତି କ୍ଷତିକାରକ ହୋଇଛି।

*ପିଲାଙ୍କ ପାଇଁ ସୁରକ୍ଷା*

ତେଣୁ ନେଟ୍ ବ୍ୟବହାର କ୍ଷେତ୍ରରେ ତଳେ ଦିଆଯାଇଥିବା କିଛି ସୁରକ୍ଷା ବ୍ୟବସ୍ଥାକୁ ମାନିବା ଉଚିତ। ପିଲାମାନଙ୍କ ପାଇଁ ଏହା ବିଶେଷ ଭାବରେ ଜରୁରୀ।

- ଅଜଣା ଲୋକମାନଙ୍କୁ ଯେପରି ତୁମେ ନିଜର ନାମ, ଠିକଣା ବା ଟେଲିଫୋନ ନମ୍ବର ଆଦି ଦିଅନାହିଁ, ସେହିଭଳି ନେଟ୍‌ରେ ମଧ୍ୟ ତୁମର ବ୍ୟକ୍ତିଗତ ସୂଚନା ଦିଅନାହିଁ।
- ନୂଆ ଆଭାସୀ ସାଥିମାନଙ୍କୁ ଭେଟିବାକୁ ଯାଅନାହିଁ। ଯଦି ନିହାତି ଯିବାକୁ ଠିକ କର ତେବେ କୌଣସି ବୟସ୍କଙ୍କୁ ସାଙ୍ଗରେ ନିଅ।
- ନେଟ୍‌ରେ ପଢୁଥିବା ସବୁକଥାକୁ ସତବୋଲି ଧରିନିଅନାହିଁ। ଭୁଲ ସୂଚନା ଦେବାପାଇଁ ଏହି ଆଭାସୀ ଦୁନିଆରେ ଅନେକ ଲୋକ ରହିଛନ୍ତି। ପୁଅଟିଏ ଝିଅର ପରିଚୟ ଦେଇପାରେ ବା ଝିଅଟିଏ ପୁଅର। ତେଣୁ ସାବଧାନ ରୁହ।
- ତୁମର ପ୍ରବେଶ ସଙ୍କେତ (*ପାସ୍‌ୱର୍ଡ*) କାହାକୁ ଜଣାଅନାହିଁ। ଏହି ସଙ୍କେତ ତୁମର ବ୍ୟକ୍ତିଗତ ତଥ୍ୟକୁ ସୁରକ୍ଷିତ ରଖେ। ତେଣୁ ପ୍ରବେଶ ସଙ୍କେତ ପାଇଗଲେ ଯେକେହି ତୁମର ସବୁ କଥା ଜାଣିପାରିବ।
- କିଛି ବିଶେଷ କାରିକା ସାହାଯ୍ୟରେ ତୁମେ ଦେଖିବାକୁ ଚାହୁଁନଥିବା ଜିନିଷ ସବୁକୁ ଅଟକାଇ ପାରିବ। ଏଭଳି କିଛି ସୁରକ୍ଷା କାରିକା ହେଉଛି 'ସାଇବର ପେଟ୍ରୋଲ' (www.cyberpetrol.com), 'ଦ ଇଣ୍ଟରନେଟ ଫିଲ୍‌ଟର' ଏବଂ 'ନେଟ୍‌ନ୍ୟାନି' (www.netnanny.com), 'ସାଇବର ସିଟର' (www.solidoak.com/cyrsitter.htm)। ଏହି କାରିକାଗୁଡ଼ିକ କମ୍ପ୍ୟୁଟରର କାମ ଉପରେ ଆଖି




HOME
PRODUCTS
OUR MISSION
PRIVACY POLICY
SUPPORT
SITE MAP

▸ family ▸ net nanny news ▸ computer security ▸ shopping

SUBSCRIBE to our newsletter
UNSUBSCRIBE

Our Products
Family Contract
Surfing Safely
Update Your Lists
Net Nanny Approved

**Net Nanny 4 Only $39.95**

Filter harmful web sites ✓
Restrict Internet access ✓
Monitor online activity ✓
Protect personal information ✓
Customize for each user ✓
No subscription fees ever ✓




*Child Safety Software for the Internet*

**Net Nanny in the News**

ପିଲାଙ୍କୁ ସୁରକ୍ଷା ଯୋଗାଉଥିବା ଏକ କାରିକା www.netnanny.com।

ରଖନ୍ତି ଏବଂ ଆପତ୍ତିଜନକ ୱେବସ୍ଥଳୀ ସହିତ ତାହାର ସଂଯୋଗକୁ ବାଧାଦିଅନ୍ତି। 'ସେଫ୍‌ସର୍ଫ' ହେଉଛି ଗୋଟିଏ ନେଟ୍‌ଭିତ୍ତିକ ଅନୁଷ୍ଠାନ ଯିଏ ବିଭିନ୍ନ ୱେବସ୍ଥଳୀର ସମୀକ୍ଷା କରେ ଓ ପିଲାଙ୍କପାଇଁ ସେଗୁଡ଼ିକର ଉପଯୋଗିତା ବିଷୟରେ ପ୍ରମାଣପତ୍ର ଯୋଗାଏ। www.safesurf.com ସ୍ଥଳୀରେ ପିଲାଙ୍କପାଇଁ ଉପଯୋଗୀ ସ୍ଥଳୀ ବିଷୟରେ ଅଧିକ ଜାଣିହେବ।

*The Original Internet Rating System*

SafeSurf Co-founders Nominated for World Technology Award

Rate Your Site
Update Explorer
SafeSurf Mirror Sites
Rating System Explained

Join us
Help us

SafeSurfing™ Sites
Internet Lifeguard
S.E.R.F Page




History of Child Safe Internet
The Declaration

FAQ Page
Press Releases
Awards Received

United Child Safe Sites
SafetyED Organization

February 21, 2001

Internet Filtering Solutions
for Families, Libraries, Schools, Businesses and ISPs.



www.safesurf.com ସ୍ଥଳୀରେ ପିଲାଙ୍କପାଇଁ ଉପଯୋଗୀ ସ୍ଥଳୀ ବିଷୟରେ ଅଧିକ ଜାଣିହେବ।

## କେତେକ ସାଧାରଣ ସୁରକ୍ଷା ବ୍ୟବସ୍ଥା

* **ଅବାଞ୍ଛିତ ଡାକ ଅଟକାଇବା:** ସହଜରେ ଡାକ ପଠାଇପାରିବାର ସୁବିଧା ଅନେକ ଅଦ୍ଭୁତ ସମସ୍ୟା ସୃଷ୍ଟି କରୁଛି। ହଠାତ କେବେ ବିଭିନ୍ନ ପ୍ରକାରର ବିଜ୍ଞାପନ ବା ରାତାରାତି ଧନୀ ହୋଇଯିବାର ଯୋଜନା ରହିଥିବା ଅନେକ ଡାକ କେଉଁ ଅଜଣା ଉତ୍ସରୁ ଆସି ତୁମପାଖରେ ପହଞ୍ଚିପାରେ। ଆଉ କିଛି ଚିଠିରେ ଅପ୍ରାସଙ୍ଗିକ ଭାଇରସ୍ ଚେତାବନୀ ଥାଇପାରେ ବା ତାହା ଶୃଙ୍ଖଳ ଚିଠି ବା ଅଶ୍ଳୀଳ ବିଷୟକ ମଧ୍ୟ ହୋଇପାରେ। ଏହିଭଳି ଅନିମନ୍ତ୍ରିତ ଓ ଅଦରକାରୀ ଇ-ଡାକକୁ 'ଅବାଞ୍ଛିତ ଡାକ' (*ସ୍ପାମ ମେଲ୍*) କୁହାଯାଏ। ଆମେ ପାଇବାକୁ ଚାହୁଁନଥିବା କଥାଗୁଡ଼ିଏ ସେଥିରେ ରହିଥାଏ। ଅବାଞ୍ଛିତ ଡାକପଠାଳୀ (*ସ୍ପାମର୍*) ଇଣ୍ଟରନେଟ ଡାକ ତାଲିକାଗୁଡ଼ିକୁ ଖୋଜିକରି ତାଙ୍କର କାମରେ ଲଗାନ୍ତି। ଅବାଞ୍ଛିତ ଡାକ ଦୁଇ ପ୍ରକାରର ହୋଇଥାଏ – ୟୁଜନେଟ ଓ ଇ-ଡାକ। ୟୁଜନେଟ ଅବାଞ୍ଛିତ ଡାକ ସାଧାରଣତଃ ୨୦ ବା ଅଧିକ ୟୁଜନେଟ ଦଳକୁ ପଠାଯାଇଥାଏ ଏବଂ ନିଜର ଠିକଣା ଜଣାଉନଥିଲେ ବି ସେହିସବୁ ଦଳର ସଦସ୍ୟମାନେ ଏହାକୁ ପାଇଥା'ନ୍ତି। କିନ୍ତୁ ଅବାଞ୍ଛିତ ଇ-ଡାକ ବ୍ୟକ୍ତିଗତ ଠିକଣାମାନଙ୍କୁ ପଠାଯାଏ।

  ଫିଲଟର ସାହାଯ୍ୟରେ ଇ-ଡାକକୁ ଛାଣିକରି ଅବାଞ୍ଛିତ ଡାକକୁ କାଟିବାର ବ୍ୟବସ୍ଥା କଥା ଆମେ ଆଗରୁ ଦେଖିଛେ। ସନ୍ଦେଶର ଶୀର୍ଷକରେ କିଛି ନିର୍ଦ୍ଦିଷ୍ଟ ଶବ୍ଦ (ଯଥା, ଟଙ୍କା, ହସକଥା) ରହିଥିଲେ ସେହି ଡାକଗୁଡ଼ିକୁ କାଟିବାପାଇଁ ବା କିଛିଦିନ ଧରି ଅବାଞ୍ଛିତ ଡାକ ପଠାଉଥିବା ଠିକଣାରୁ ଆସୁଥିବା ଡାକକୁ ଅଟକାଇବା ପାଇଁ ଆମେ ନିର୍ଦ୍ଦେଶ ଦେଇପାରିବା।

* **ଗୁପ୍ତସଙ୍କେତ ରୂପରେ ସନ୍ଦେଶ ପଠାଅ:** ଠିକଣା ଜାଗାରେ ପହଞ୍ଚିବା ଆଗରୁ ତୁମର ଡାକ ଅନେକ ସେବା ଯୋଗାଣକାରୀଙ୍କ ହାତ ଦେଇ ଯାଇଥାଏ। ତେଣୁ ଆଉ କେହି ତାହାକୁ ପଢ଼ିବାର ସମ୍ଭାବନା ସବୁବେଳେ ରହିଥାଏ। ପ୍ରକୃତରେ ଏବେ ଅନେକ ପ୍ରତିଷ୍ଠାନ ତାଙ୍କର କର୍ମଚାରୀଙ୍କର ଇ-ଡାକକୁ ଦେଖୁଛନ୍ତି। ତେଣୁ ଆଉ କେହି ତୁମର ଡାକ ନପଢ଼ିବା ବିଷୟରେ ନିଶ୍ଚିତ ହେବାକୁ ଚାହିଁଲେ ତୁମେ ତାହାକୁ ଗୁପ୍ତ ସଙ୍କେତ ଜରିଆରେ ପଠାଇପାରିବ। ଅଧିକାଂଶ ଇ-ଡାକ କାରିକାରେ ଏହି ଗୁପ୍ତ ସଙ୍କେତନ ସୁବିଧା ମିଳିଥାଏ।




ଅବାଞ୍ଛିତ ଠିକଣାରୁ ଆସୁଥିବା ଡାକକୁ ଅଟକାଇବା ବ୍ୟବସ୍ଥା ଡାକ କାରିକାରେ ରହିଛି।

* **ଉତ୍ପୀଡ଼କଙ୍କୁ ଏଡ଼ାଇଯାଅ:** ଅନେକ ବିଖ୍ୟାତ ଲୋକ ବେଶ୍ ସଂଖ୍ୟାର ଅବାଞ୍ଛିତ ଓ ବିରକ୍ତିକର ଡାକ ପାଇଥା'ନ୍ତି। ଏହାର ମୁକାବିଲା ପାଇଁ ଗୋଟିଏ ବାଟ ହେଉଛି ଏକ ମାଗଣା ଇ-ଡାକ ଠିକଣା ନେବା ଓ ପରିସ୍ଥିତି ଖରାପ ହେଲେ ତାହାକୁ ଛାଡ଼ିଦେଇ ଆଉ ଗୋଟିଏ ଠିକଣା ଖୋଲିବା। ତେବେ ତୁମର ପ୍ରକୃତ ଡାକ ଏକାଉଣ୍ଟକୁ ଥରକୁ ଥର ବଦଳାଇବା ସହଜ ନୁହେଁ।
* **କ୍ରେଡ଼ିଟ କାର୍ଡକୁ ସୁରକ୍ଷିତ ରଖ:** ନେଟ୍‌ରେ ଅଧିକାଂଶ କିଣାବିକା କ୍ରେଡ଼ିଟ କାର୍ଡ ଜରିଆରେ କରାଯାଇଥାଏ। ତେଣୁ କିଛି ଜାଲିଆତି ଧରାପଡ଼ିଲେ ତୁମେ ତୁମର ବ୍ୟାଙ୍କକୁ ଜଣାଇ ସେହି ଦେୟକୁ ଅଟକାଇ କରିପାରିବ। ନେଟ୍‌ରେ କିଛି କିଣିଲାବେଳେ ତାହାର ବିବରଣୀ ମୁଦ୍ରିତ ରୂପରେ ରଖିବା ଉଚିତ। ସେହି ବିକ୍ରେତାର ଠିକଣା ଓ ୱେବସ୍ଥଳୀ ଆଦିର ସୂଚନା ମଧ୍ୟ ରଖିବା ଉଚିତ। ନେଟ୍ କିଣାବିକାରେ କ'ଣ କରିବା ଉଚିତ ଓ କ'ଣ ଅନୁଚିତ ସେବିଷୟରେ ଅନେକ କଥା ରହିଛି www.scambuster.org ୱେବସ୍ଥଳୀରେ।
* **ୱେବ ଭ୍ରମଣର ବାଟ ଲୁଚାଅ:** ଆଜିର ନେଟ୍ ବିକ୍ରେତାମାନେ କେତେ ସ୍ୱତନ୍ତ୍ର କାରିକା ସାହାଯ୍ୟରେ ତୁମକୁ କ'ଣ ଭଲଲାଗେ, କ'ଣ ଭଲଲାଗେନାହିଁ, କେଉଁ ୱେବସ୍ଥଳୀକୁ ତୁମେ ଯାଉଛ, କ'ଣ କିଣୁଛ ସେସବୁ କଥା ଜାଣିପାରୁଛନ୍ତି। ଏହି ସୂଚନା ସାହାଯ୍ୟରେ ସେମାନେ ତାଙ୍କର ସେବା ଓ ଉତ୍ପାଦକୁ ତୁମ ଚାହିଦା ସହିତ ମିଳାଇପାରନ୍ତି। କିନ୍ତୁ ତୁମେ କେଉଁଆଡ଼େ ଯାଉଛ ତାହା ନଜଣାଇ ନେଟ୍‌ରେ ବୁଲିବା ଏବେ ସମ୍ଭବ ହୋଇପାରୁଛି। 'ଆନୋନିମାଇଜର' (www.anonymizer.com) ହେଉଛି ଏଭଳି ଏକ ସହାୟକ ଯାହା ସାହାଯ୍ୟରେ ତୁମେ ତୁମର ପାଦଚିହ୍ନ ଲୁଚାଇ ୱେବ ଭ୍ରମଣ କରିପାରିବ। ତୁମର ସତ ପରିଚୟ ନଜଣାଇ ମଧ୍ୟ ତୁମେ ଇ-ଡାକ ପଠାଇପାରିବ ବା ୟୁଜନେଟରେ ସନ୍ଦେଶ ଛାଡ଼ିପାରିବ। ଅଜଣା ଭାବରେ ଇ-ଡାକ ପଠାଇବା ପାଇଁ 'ରିପ୍ଲେ ରିମେଲର' (http:/replay.com/remailer) ଏବଂ ୱେବ ଆଧାରିତ ୟୁଜନେଟ ସନ୍ଦେଶ ପାଇଁ ସାହାଯ୍ୟ କରିଥାଏ 'ଦେଜା ନିଉଜ' (www.deja.com)।
* **ପ୍ରବେଶ ସଙ୍କେତକୁ କଡ଼ା କର:** ତୁମର ପ୍ରବେଶ ସଙ୍କେତ ଯେତିକି କଡ଼ା ହେବ, ତୁମର କ୍ରେଡିଟ କାର୍ଡ, ଟଙ୍କା ଉଠାଣ କାର୍ଡ, ଫୋନ କାର୍ଡ ଆଦି ସେତିକି ସୁରକ୍ଷିତ ରହିବ। ସର୍ବେକ୍ଷଣରୁ ଜଣାଯାଏ ଯେ ଶତକଡ଼ା ୨୦ ଭାଗ ପ୍ରବେଶ ସଙ୍କେତକୁ ସହଜରେ ଅନୁମାନ କରି ଧରିହୁଏ। ତେଣୁ କିଛି ସଙ୍କେତନ ନିୟମ ବ୍ୟବହାର କରି ତୁମେ ଏପରି ପ୍ରବେଶ ସଙ୍କେତ ବାଛିପାରିବ ଯାହାକୁ ଅନୁମାନ କରିବା ସହଜ ହେବନାହିଁ। ସହଜରେ ଧରି ହେଉନଥିବା ଏଭଳି ସାଙ୍କେତିକ ପ୍ରବେଶ ସଙ୍କେତ ଅଳ୍ପ ମୂଲ୍ୟରେ ଯୋଗାଇବା ପାଇଁ 'ପାସ୍‌ୱାର୍ଡ କିପର୍' ନାମକ ଏକ ସେବା ରହିଛି। ତୁମର ପ୍ରବେଶ ସଙ୍କେତକୁ ମନେରଖିବା ପାଇଁ କିଛି ସହାୟକ ସୂଚନା ମଧ୍ୟ ଏହା ଯୋଗାଇଦେବ।

# ଅଷ୍ଟମ ଅଧ୍ୟାୟ

# ୱେବସ୍ଥଳୀ ଗଢ଼ିବା

ଆଭାସୀ ଦୁନିଆରେ ନିଜର ଉପସ୍ଥିତି ପାଇଁ ଏବେ ପ୍ରତ୍ୟେକ ବାଣିଜ୍ୟିକ ଓ ଅଣ–ବାଣିଜ୍ୟିକ ପ୍ରତିଷ୍ଠାନ, ଶିକ୍ଷା ଓ ଗବେଷଣା ଅନୁଷ୍ଠାନ, ସରକାରୀ ବିଭାଗ, ଛୋଟ ବ୍ୟବସାୟୀ, ସ୍ୱେଚ୍ଛାସେବୀ ସଂଗଠନ, ଏପରିକି ବ୍ୟକ୍ତି ବିଶେଷ ମଧ୍ୟ ନିଜ ନିଜର ୱେବସ୍ଥଳୀ ସ୍ଥାପନା କରୁଛନ୍ତି। ଆମେ ମଧ୍ୟ ନିଜର ୱେବ ସାଇଟ ସ୍ଥାପନା କରିପାରିବା କାରଣ Geocities, Xoom ଓ Tripod ଭଳି କେତେକ ଇଣ୍ଟରନେଟ କମ୍ପାନୀ ସେମାନଙ୍କର ଇଣ୍ଟରନେଟ ସେବକରେ ଏଥିପାଇଁ ମାଗଣାରେ ସ୍ଥାନ ଯୋଗାଇ ଦେଉଛନ୍ତି। ୱେବପୃଷ୍ଠା ତିଆରି କରିବା ପାଇଁ ଦରକାରୀ କାରିକା ମଧ୍ୟ ସେମାନେ ବିନା ମୂଲ୍ୟରେ ଦେଉଛନ୍ତି। ଏହି ସୁବିଧା ନେବାକୁ ହେଲେ ୱେବସ୍ଥଳୀର ସ୍ଥାପନା ଓ ପରିଚାଳନା ପାଇଁ କେଉଁ କେଉଁ ପ୍ରକ୍ରିୟା ଦେଇ ଯିବାକୁହେବ ପ୍ରଥମେ ତାହା ଜାଣିବାକୁ ହେବ।

*ପରିସର ନାମର ପଞ୍ଜୀକରଣ*

ଆମର ପ୍ରଥମ କାମ ହେବ ନିଜର ୱେବସ୍ଥଳୀ ପାଇଁ ଗୋଟିଏ ନାମ ବାଛିକରି ତାହାର ପଞ୍ଜୀକରଣ କରାଇବା। ପ୍ରଥମେ ନାମଟିଏ ଭାବିନିଅ (ମନେକର ଯେ ଏହା ହେଉଛି www.mysite.com) ଏବଂ 'ନେଟୱର୍କ ସଲୁସନ୍ସ୍' (www.networksolutions.com) ସ୍ଥଳୀକୁ ଯାଇ ଦେଖ ଯେ ଆଗରୁ ସେହି ଏକା ନାମକୁ ଅନ୍ୟ କେହି ପଞ୍ଜିକୃତ କରାଇଛି କି ନାହିଁ। ଏହି ପଞ୍ଜୀକରଣ ଫଳରେ ତୁମେ ନିଶ୍ଚିତ ହେବ ଯେ ନେଟ୍‌ରେ ତୁମର ଅନନ୍ୟ ଠିକଣା ରହିଛି। ତୁମେ ବାଛିଥିବା ନାଁକୁ ଆଗରୁ ଆଉ କେହି ପଞ୍ଜୀକୃତ କରିଥିବାର ସମ୍ଭାବନା ସବୁବେଳେ ରହିଛି। ସେଭଳି କ୍ଷେତ୍ରରେ, ଏପର୍ଯ୍ୟନ୍ତ ପଞ୍ଜୀକୃତ ହୋଇନଥିବା ବିକଳ୍ପ ନାମଟିଏ ତୁମକୁ ବାଛିବାକୁ ହେବ। ସେଭଳି ନାଁଟିଏ ପାଇଲାପରେ ତାହାକୁ ସାଙ୍ଗେ ସାଙ୍ଗେ ପଞ୍ଜୀକୃତ କରିନିଅ। ଏଥିପାଇଁ ତୁମକୁ କ୍ରେଡିଟ କାର୍ଡ ଜରିଆରେ କିଛି ଟଙ୍କା ଦେବାକୁ ପଡ଼ିବ (ଏବେ ଏହି ଦେୟ ହେଉଛି – ପ୍ରଥମ ଦୁଇ ବର୍ଷପାଇଁ ୭୦ ଡଲାର ଓ ତା'ପରେ ପ୍ରତିବର୍ଷ ପାଇଁ ୪୦ ଡଲାର)। ଯଦି ତୁମର କ୍ରେଡିଟ କାର୍ଡ ସୁବିଧାନାହିଁ, ତୁମେ ତୁମ ଆଇଏସପିର ବା କୌଣସି ୱେବ ବିକାଶ କମ୍ପାନୀର ସାହାଯ୍ୟ ନେଇପାରିବ ଯିଏକି ତୁମ ତରଫରୁ ଟଙ୍କା ଦେଇ ତୁମ ନାମ ପଞ୍ଜୀକୃତ କରିଦେବ। ତୁମର ୱେବପୃଷ୍ଠା କେଉଁ ସେବକରେ ରହିବ ପଞ୍ଜୀକରଣ ପ୍ରକ୍ରିୟାରେ ତାହା ତୁମକୁ ଜଣାଇବାକୁ ହେବ। ପଞ୍ଜୀକରଣ ପ୍ରକ୍ରିୟା ଉପରେ ଅଧିକ ବିବରଣୀ ତୁମେ ନେଟୱର୍କ ସଲୁସନ୍ସ୍‌ର ୱେବସ୍ଥଳୀରୁ ପାଇପାରିବ।

ତୁମେ ଯଦି 'ଜିଓସିଟିଜ୍' (www.geocities.com), 'ଟ୍ରାଇପଡ୍' (www.tripod.com) ବା 'ଜୁମ୍' (www.xoom.com) ଦେଉଥିବା ମାଗଣା ସୁବିଧା ନେବାକୁ ଚାହୁଁଛ ତେବେ ତାହା ବେଶ୍ ସହଜ। ଜିଓସିଟିଜ୍‌ରେ ତୁମର ୱେବସ୍ଥଳୀ ଗଢ଼ିବାକୁ ଚାହୁଁଥିଲେ ସେହି ସ୍ଥଳୀକୁ ଯାଅ ଓ ତାଙ୍କ ତାଲିକାରୁ ଗୋଟିଏ ଦଳ ବାଛିକରି ତୁମର ଲଗଇନ ନାମ, ପ୍ରବେଶ ସଙ୍କେତ ଓ ଇ–ଡାକ ଠିକଣା ଭରିଦିଅ। ମାତ୍ର କେତେ ମିନିଟ

NETWORK SOLUTIONS
A VeriSign Company
Make Payments WHOIS Lookup
HOME > MAKE CHANGES > PRODUCTS & SERVICES > SITE MAP > HELP

Register a Web Address (domain name)

Search for a domain name – no obligation!
www. .com Go!
1 enter a name, word or phrase, 2 choose a domain 3 click Go!
Need help to get started? Click here.
Build your Web site in 10 minutes! It's easy – Go!

Launch your Web site today

Build Your Web Site Today
It's easier than you think to build your own Web site. We'll walk you through it. Preview your design before you buy.
Learn more

Get Noticed with Personalized E-mail
Make an impression with an e-mail address that matches your domain name. Works with

Expand your Internet identity

Register in over 50 countries with IdNames
IdNames provides worldwide registration and management of domain names. Register your name in over 50 countries online.
Learn more

Register In Your Own Language
Register your domain names in non-English languages. A range of translations services

ପରିସର ନାମ ପଞ୍ଜୀକରଣ ପାଇଁ *ନେଟୱର୍କ ସଲୁସନ୍ସ* ୱେବସ୍ଥଳୀ।

ଭିତରେ ଡିଓସିଟିଜ୍ ତୁମପାଇଁ ୧୫ ଏମ୍‌ବି ସ୍ଥାନ ସଂରକ୍ଷିତ ରଖି ଇ-ଡାକ ଜରିଆରେ ତୁମର ୟୁଆରଏଲ ଜଣାଇଦେବ। ସେହି ୟୁଆରଏଲ ବା ଠିକଣାରେ ତୁମେ ତୁମର ୱେବପୃଷ୍ଠା ଅପଲୋଡ କରିପାରିବ। କେତେକ ଇଣ୍ଟରନେଟ ସେବା ଯୋଗାଣକାରୀ ମଧ୍ୟ ସଦସ୍ୟମାନଙ୍କର ୱେବପୃଷ୍ଠା ପାଇଁ ସେମାନଙ୍କର ହାର୍ଡଡିସ୍କରେ କିଛି ଜାଗା ଛାଡ଼ି ଦେଇଥାନ୍ତି। ଏହି ସୁବିଧା ବ୍ୟବହାର କରିବାପାଇଁ କୌଣସି ପରିସର ନାମ ପଞ୍ଜୀକରଣ ଦରକାର ପଡ଼େନାହିଁ। ତୁମର ସେବା ଯୋଗାଣକାରୀ ଏହି ସୁବିଧା ଦେଉଛି କି ନାହିଁ ତାହା ବୁଝିନିଅ।

ମନେରଖ ଯେ ଯୁକ୍ତରାଷ୍ଟ୍ର ଆମେରିକା ଭିତରେ ସବୁ ପରିସରର ନାମ ନିର୍ଦ୍ଧାରଣ କରିବା ଓ ସୂଚନା ରଖିବାର ଦାୟିତ୍ୱ ନେଟୱର୍କ ସଲୁସନ୍‌ସ୍‌କୁ ଦିଆଯାଇଛି। ନେଟୱର୍କ ସଲୁସନ୍ସ୍ ବୁଝୁଥିବା ନାମଗୁଡ଼ିକର ପ୍ରକାର ହେଉଛି – .com (ବାଣିଜ୍ୟିକ ସଂସ୍ଥା ପାଇଁ), .org (ବିନାଲାଭରେ ଚାଲୁଥିବା ସଂସ୍ଥା ପାଇଁ), .net (ନେଟୱର୍କ ପାଇଁ), .edu (ଶିକ୍ଷା ସମ୍ପର୍କିତ ଅନୁଷ୍ଠାନ ପାଇଁ), .gov (ସରକାରୀ ସଂସ୍ଥା ପାଇଁ) ଏବଂ .mil (ସାମରିକ ସେବା ପାଇଁ)। ନାମଗୁଡ଼ିକର ଶେଷରେ ଏହିପ୍ରକାର ସୂଚକ ସଙ୍କେତ ରହିଥାଏ ଏବଂ ପ୍ରଥମେ ଆସିଥିବା ଲୋକ ତା'ର ପସନ୍ଦର ନାମ ଆଗ ପାଇଥାଏ।

ଅନ୍ୟ ଦେଶମାନଙ୍କରେ ଅଲଗା ପରିସର ପ୍ରଶାସକମାନେ ରହିଛନ୍ତି ଏବଂ ସେମାନେ ସେହି ଦେଶପାଇଁ ପରିସର ନାମ ଯୋଗାଇଥା'ନ୍ତି। ଉଦାହରଣ ସ୍ୱରୂପ, *ନେସନାଲ ସେଣ୍ଟର ଫର ସଫ୍ଟୱେର ଟେକ୍ନୋଲୋଜି* (NCST - www.ncst.ernet.in) ନିର୍ଦ୍ଦିଷ୍ଟ ଭାବରେ ଭାରତ ପାଇଁ ପରିସର ନାମ ଦେଇଥାଏ। ଏହା ବିଷୟରେ ଅଧିକ ସୂଚନା ତୁମେ http://domain.ncst.ernet.in ସ୍ଥଳୀରେ ପାଇପାରିବ। ଯୁକ୍ତରାଷ୍ଟ୍ର ଆମେରିକା ଛଡ଼ା ଅନ୍ୟ ଦେଶପାଇଁ ନିର୍ଦ୍ଦିଷ୍ଟ ପରିସର ନାମର ଶେଷରେ ଗୋଟିଏ ଦୁଇଅକ୍ଷର ବିଶିଷ୍ଟ ଶବ୍ଦ ଦେଖିବାକୁ ମିଳେ। ତାହା ଦେଶର ନାମକୁ ସୂଚାଇଥାଏ, ଯଥା, www.wipro.co.in । ଦେଶକୁ ସୂଚାଉଥିବା

ଏହି ଉଚ୍ଚସ୍ତରର ପରିସର IN ବ୍ୟତୀତ କିଛି ଉପ-ପରିସର ନାମ ମଧ୍ୟ ରହିପାରେ। ଯଥା, ଶିକ୍ଷା ଓ ଗବେଷଣା ପାଇଁ ERNET (Academics and Research Network), ସରକାରୀ ନେଟୱର୍କ ପାଇଁ NIC, ଇଣ୍ଟରନେଟ ସେବା ଯୋଗଣକାରୀଙ୍କ ପାଇଁ NET, ଗବେଷଣା ଗୋଷ୍ଠୀ ପାଇଁ RES, ଶିକ୍ଷା ସଂପ୍ରଦାୟ ପାଇଁ AC, ବାଣିଜ୍ୟିକ ସଂଗଠନ ପାଇଁ CO, ମିଲିଟାରୀ ସଂଗଠନ ପାଇଁ MIL, ସରକାରୀ କାର୍ଯ୍ୟାଳୟ ପାଇଁ GOV ଏବଂ ଅନ୍ୟ ବର୍ଗର ସଂଗଠନ ପାଇଁ ORG ଭଳି ଉପପରିସର ରହିଛି।

*ୱେବସ୍ଥଳୀର ବିକାଶ ଓ ଉତ୍ପ୍ରେରଣ (ଅପଲୋଡିଙ୍ଗ)*

ପରିସର ନାମ ପଞ୍ଜୀକୃତ ହେବାପରେ ଆମର କାମ ହେଉଛି ୱେବସ୍ଥଳୀର ବିକାଶ। ଏଥିପାଇଁ ପ୍ରଥମେ ଆମକୁ ଚିନ୍ତା କରିବାକୁ ହେବ ଯେ ସେହି ୱେବସ୍ଥଳୀରେ କେଉଁ ପ୍ରକାରର ସୂଚନା ରଖିବା ଏବଂ ତାହାର ଉପସ୍ଥାପନା କିଭଳି କରିବା। ୱେବପୃଷ୍ଠାଟି କେବଳ ଆମ ସଂଗଠନ ପରିଚିତିପତ୍ରର ଇଲେକ୍ଟ୍ରୋନିକ ରୂପ ହେବା କଥା ନୁହେଁ। ବରଂ ୱେବସ୍ଥଳୀର ଯୋଜନା କଲାବେଳେ ଆମକୁ ମନରେ ରଖିବାକୁ ହେବ ଯେ ପାରସ୍ପରିକ୍ରିୟା ପାଇଁ ଯେପରି ଏହା ବିଶେଷ ସୁବିଧା ଯୋଗାଇପାରିବ। ଅର୍ଥାତ, ବ୍ୟବହାରକାରୀ ଚାହିଁଲେ କିଛି ମାଗିପାରିବ ଏବଂ ୱେବସ୍ଥଳୀ ଜରିଆରେ ତାଙ୍କୁ ତାହା ଯୋଗାଇହେବ। ଆହୁରି ମଧ୍ୟ ଆମ ୱେବସ୍ଥଳୀକୁ କେହି ବୁଲିଆସିବା ପାଇଁ ଯଥେଷ୍ଟ କାରଣ ଯେପରି ରହିବ। ତୁମେ ଦେଖିଥିବ ଯେ ଯାହୁ, AOL, MSN ଭଳି ଅତି ଲୋକପ୍ରିୟ ୱେବସ୍ଥଳୀ ବ୍ୟବହାରକାରୀଙ୍କୁ ଅନେକ ଦରକାରୀ ସୂଚନା ଓ ସେବା ଯୋଗାଇଥାନ୍ତି। ସେମାନଙ୍କର ୱେବସ୍ଥଳୀରେ ଖୁବ୍ କମ୍ ଚିତ୍ର ରହିଥାଏ।

ୱେବସ୍ଥଳୀରେ ରଖିବାପାଇଁ ଆମର ଲେଖା ଓ ଚିତ୍ର ଠିକ ହୋଇଗଲେ ସେସବୁକୁ କିଭଳି ସଜାଇବା ଓ କ'ଣ କେଉଁଠି ରଖିବା ତାହାର ଗୋଟିଏ ନକ୍ସା ଆମକୁ କରିବାକୁ ହେବ। ୱେବପୃଷ୍ଠାର ଚୂଡ଼ାନ୍ତ ପ୍ରସ୍ତୁତି ବେଳେ



ୱେବସ୍ଥଳୀପାଇଁ ମାଗଣା ସୁବିଧା ଯୋଗାଏ ଜିଓସିଟିଜ୍ ୱେବସ୍ଥଳୀ।

ବଡ଼ ଧରଣର ପରୀକ୍ଷା ଚଳାଇବା ବଦଳରେ ତାହା ଆମେ ନକ୍ସା ଜରିଆରେ ଆଗରୁ କରିପାରିବା। ଏହା ଆମର ପରିଶ୍ରମକୁ କମେଇ ପାରିବ ଏବଂ ୱେବପୃଷ୍ଠାକୁ ଅଧିକ ପ୍ରଭାବଶାଳୀ କରିପାରିବ। ଥରେ ଆମର ନକ୍ସା ତିଆରି ହୋଇଗଲେ ଆମେ ୱେବପୃଷ୍ଠା ତିଆରିରେ ଲାଗିଯିବା।

ୱେବପୃଷ୍ଠା ତିଆରି ଦୁଇଟି ବାଟରେ କରାଯାଇପାରିବ – 'ଡସ୍'ର 'ଏଡିଟ୍' କିମ୍ବା ୱିଣ୍ଡୋଜର 'ନୋଟ୍ପ୍ୟାଡ' ଭଳି କୌଣସି ସରଳ ପାଠ୍ୟ ସଂପାଦକ ବ୍ୟବହାର କରି ଆମେ ୱେବପୃଷ୍ଠାର ପାଠ୍ୟ ଲେଖିପାରିବା ଏବଂ ସେଥିରେ ସଜ୍ଜିକରଣ ପାଇଁ ଓ ଟେବୁଲ, ଫର୍ମ ଓ ତାଲିକା ଆଦି ପାଇଁ ଅନ୍ୟ ଦରକାରୀ ଟୀକା (*ଟ୍ୟାଗ୍*) ସବୁ ହାତରେ ଦେଇପାରିବା। ଅନ୍ୟ ବାଟରେ ଆମେ ଏକ ଏଚଟିଏମଏଲ ସଂପାଦକ ବ୍ୟବହାର କରି ସେହି ସବୁ ଟ୍ୟାଗ୍ ଆଦିକୁ ସ୍ୱୟଂକ୍ରିୟ ଭାବରେ କରାଇପାରିବା। ଏଥିପାଇଁ ଆମେ *ଏମଏସ ଫ୍ରଣ୍ଟପେଜ, ନେଟସ୍କେପ କମ୍ପୋଜର, ଡ୍ରିମୱିଭର, ଏଡୋବ ପେଜମିଲ, ସଫ୍ଟକ୍ୱାଡ୍ ହଟମେଟାଲ* ଭଳି କିଛି ବ୍ୟବସାୟିକ ଏଚଟିଏମଏଲ ସଂପାଦକ କିମ୍ବା *ଏଚଟିଏମଏଲ ୱେବୱିଭର* ବା *ଏଚଟିଏମଏଲ ଏସିଷ୍ଟାଣ୍ଟ* ଭଳି କିଛି ଶେୟାରୱେର ସମ୍ପାଦକ ବ୍ୟବହାର କରିପାରିବା। ଏହି କାରିକାଗୁଡ଼ିକରେ ବିଭିନ୍ନ ମେନୁ ନିର୍ଦ୍ଦେଶ ଓ ବୋତାମ ରହିଥାଏ ଯାହା ସାହାଯ୍ୟରେ ୱେବପୃଷ୍ଠା ତିଆରି କଲାବେଳେ ଦରକାର ପଡୁଥିବା ଟାଇପ କରିବା କାମକୁ ଏଡ଼ାଇ ଯାଇପାରିବ। ଏମଏସ ୱର୍ଡ, ଏମଏସ-ଏକ୍ସେଲ ବା ଏମଏସ ପାୱାରପଏଣ୍ଟ ଭଳି ବିଭିନ୍ନ ନାମୀ କାରିକାରେ ତିଆରି ଦଲିଲଗୁଡ଼ିକୁ ମଧ୍ୟ ଏଚଟିଏମଏଲ ଫାଇଲ ରୂପରେ ସାଇତି ହେବ। ଏହି ଫାଇଲଗୁଡ଼ିକୁ ତୁମର ୱେବସ୍ଥଳୀର ଅଂଶ ଭାବରେ ପରେ ସଂଯୁକ୍ତ କରିହେବ। କିନ୍ତୁ ୱେବପୃଷ୍ଠା ଉପରେ ଅଧିକ ନିୟନ୍ତ୍ରଣ ରଖିବାପାଇଁ ଏଚଟିଏମଏଲ ଟ୍ୟାଗ୍ ଉପରେ କିଛି ମୌଳିକ ଧାରଣା ରହିବା ଜରୁରୀ। ଏହା ତୁମ ୱେବପୃଷ୍ଠାରେ କୌଣସି ଭୁଲ ଧରିବାରେ ସାହାଯ୍ୟ କରିଥାଏ।

```html
<html>
<head>
<title>Untitled Document</title>
<meta http-equiv="Content-Type" content="text/html; charset=iso-8859-1">
</head>

<body bgcolor="#FFFFFF">
<p align="center"><font face="Georgia, Times New Roman, Times, serif" size="7"
color="#FF0066">SRUJANIKA</font><br>
  <font face="Verdana, Arial, Helvetica, sans-serif" size="3" color="#999900">(A
  society for research and innovation on science, education and development)</
font><font face="Verdana, Arial, Helvetica, sans-serif" size="3"
color="#0000FF"><br>
  <br>
  Jagamara, po: Khandagiri, Bhubaneswar 751 030, Orissa, India <br>
```

ଏଚଟିଏମଏଲ ପୃଷ୍ଠା

SRUJANIKA

(A society for research and innovation on science, education and development)

Jagamara, po: Khandagiri, Bhubaneswar 751 030, Orissa, India

ପ୍ରଦର୍ଶିତ ରୂପ

ଏଚଟିଏମଏଲ ପୃଷ୍ଠାର ଏକ ଉଦାହରଣ।




ମାକ୍ରୋମେଡ଼ିଆ କମ୍ପାନୀର ଡ୍ରିମୱିଭର – ୱେବପୃଷ୍ଠା ତିଆରି କରିବା ପାଇଁ ଏକ ଶକ୍ତିଶାଳୀ କାରିକା।

ଯଦି ତୁମର ୱେବପୃଷ୍ଠାରେ କିଛି ଫର୍ମ ରହିଥାଏ ତେବେ ତୁମକୁ କିଛି ପୃଷ୍ଠଭୂମି କାରିକା ଯୋଡ଼ିବାକୁ ପଡ଼ିବ। ଏହି କାରିକା ବ୍ୟବହାରକାରୀ ଦେଇଥିବା ସୂଚନାକୁ ଗ୍ରହଣକରିବ ଏବଂ ତାହାକୁ ଇ–ଡାକ ରୂପରେ ତୁମ ପାଖକୁ ପଠାଇଦେବ କିମ୍ବା ତାହାକୁ ସିଧାସଳଖ ନେଇ ତୁମର ତଥ୍ୟାଧାରରେ ରଖିଦେବ। *ସିଜିଆଇ ସ୍କ୍ରିପ୍‌ଟ୍‌ସ* ବା *ପର୍ଲ* ଭଳି ଭାଷାକୁ ଏହି କାମପାଇଁ ବ୍ୟବହାର କରାଯାଏ। ତୁମେ ଯଦି ପଟି ବିଜ୍ଞାପନ (*ବେନର ଆଡ୍‌ସ୍*) ଚାହୁଁଥାଅ, ତାହାହେଲେ ତୁମେ *ଫ୍ଲାଶ୍* ବା *ଫାୟାର୍‌ୱର୍କସ୍* ଭଳି କାରିକାରେ ଏନିମେଟେଡ *ଜିଫ୍* ଫାଇଲ ସୃଷ୍ଟି କରିପାରିବ ଏବଂ ଉପଯୁକ୍ତ ଟ୍ୟାଗ୍ ଜରିଆରେ ତାହାକୁ ୱେବପୃଷ୍ଠାରେ ରଖିପାରିବ। ଅଧିକ ସଚଳ ଏନିମେସନ ପାଇଁ ତୁମେ *ଜାଭା ଏପ୍‌ଲେଟ୍‌ସ* ଲେଖିକରି ତାହାକୁ ୱେବପୃଷ୍ଠା ସହିତ ଯୋଡ଼ିପାରିବ। ମନେରଖ ଯେ *ଜାଭା* ହେଉଛି ଏକ କମ୍ପ୍ୟୁଟର ଭାଷା ଯାହା ଇଣ୍ଟରନେଟ ପାଇଁ ବିଶେଷ ଉପଯୋଗୀ ଏବଂ ଇଣ୍ଟରନେଟ ପାଇଁ ବିଭିନ୍ନ ପ୍ରକାରର କାରିକା ବିକାଶ କରିବାରେ ତାହା ବ୍ୟବହୃତ ହୋଇପାରିବ।

ପୃଷ୍ଠାଗୁଡ଼ିକ ତିଆରି ହୋଇଗଲା ପରେ ଏଚଟିଏମଏଲ ସଂପାଦକ ସାହାଯ୍ୟରେ ବା ଏଚଟିଏମଏଲ ଟ୍ୟାଗ୍ ବ୍ୟବହାର କରି ତୁମେ ସେସବୁ ପାଇଁ ସଂଯୋଗ ଯୋଗାଇ ପାରିବ। ସାଧାରଣତଃ ମୂଳପୃଷ୍ଠାଟି index.html ନାମକ ଫାଇଲ ରୂପରେ ସାଇତା ହୋଇଥାଏ। ଅନ୍ୟ ଫାଇଲପାଇଁ ତୁମେ ତୁମର ସୁବିଧା ଅନୁସାରେ ଯେକୌଣସି ନାମ ଦେଇପାର। ୱେବପୃଷ୍ଠା ବିକାଶ କଲାବେଳେ ତୁମ କମ୍ପ୍ୟୁଟରରେ ସ୍ଥାପିତ ବ୍ରାଉଜର ଜରିଆରେ ତୁମେ ସେଗୁଡ଼ିକୁ ସାଙ୍ଗେ ସାଙ୍ଗେ ପରୀକ୍ଷା କରି ଦେଖିପାରିବ। ଲକ୍ଷକରିବା କଥା ଯେ ଇଣ୍ଟରନେଟ ସହିତ ସଂଯୁକ୍ତ ହୋଇନଥିବା କମ୍ପ୍ୟୁଟରରେ ମଧ୍ୟ ଆମେ ୱେବପୃଷ୍ଠା ତିଆରି କରିପାରିବା। କେବଳ ଶେଷ ପରୀକ୍ଷା ସମୟରେ ଆମକୁ ଦେଖିବାକୁ ହୁଏ ଯେ ଆମର ୱେବପୃଷ୍ଠାଗୁଡ଼ିକ ଉପଯୁକ୍ତ ୱେବସ୍ଥଳୀକୁ ସଂଯୁକ୍ତ କରୁଛନ୍ତି। ସେତେବେଳେ ଆମକୁ ଇଣ୍ଟରନେଟ ସଂଯୁକ୍ତ କମ୍ପ୍ୟୁଟରକୁ ଯିବାକୁ ପଡ଼ିଥାଏ।

ଆମର ସବୁ ପୃଷ୍ଠା ବିକଶିତ ଓ ପରୀକ୍ଷିତ ହେଲା ପରେ ସେଗୁଡ଼ିକୁ ଇଣ୍ଟରନେଟ ସେବକକୁ ଉତ୍‌ପ୍ରେରିତ (*ଅପଲୋଡ*) କରିବାର ସମୟ ଆସିଥାଏ। ଏଫ୍‌ଟିପି ଜରିଆରେ ଏହି କାମଟି କରାଯାଇଥାଏ। ଏବେ ପୃଥିବୀ ସାରା ସମସ୍ତେ ଦେଖିବାପାଇଁ ତୁମର ୱେବସ୍ଥଳୀ ପ୍ରସ୍ତୁତ ହୋଇଗଲା। କେତେକ ବ୍ରାଉଜର ଏବଂ ଏଚଟିଏମଏଲ ସଂପାଦକରେ ମଧ୍ୟ ଅପଲୋଡ କରିବାର ସୁବିଧା ରହିଛି।

### ତୁମର ୱେବସ୍ଥଳୀକୁ ଲୋକଲୋଚନକୁ ଆଣିବ କିପରି

ଗୋଟିଏ ୱେବସ୍ଥଳୀ କେବଳ ଗଢ଼ିଦେଲେ ବିଶେଷ କିଛି ଲାଭ ହେବନାହିଁ। ଯାହା ପାଇଁ ତାହା ଉଦ୍ଦିଷ୍ଟ ସେମାନେ ତାକୁ ଦେଖିବା ଦରକାର। ସେଥିପାଇଁ ସେମାନେ ଜାଣିବା ଦରକାର ଯେ ତୁମର ୱେବସ୍ଥଳୀଟିଏ ରହିଛି। ସମସ୍ତଙ୍କୁ ଏହି କଥା ଜଣାଇବା ପାଇଁ ତୁମକୁ ବିଭିନ୍ନ ମାଧ୍ୟମ ଜରିଆରେ ଏହା ବିଷୟରେ ବିଜ୍ଞାପନ ଦେବାକୁ ହେବ। ତୁମେ ଦେଖିଥିବ ଟିଭି କମ୍ପାନୀମାନେ କିପରି ସେମାନଙ୍କର ୱେବସ୍ଥଳୀର ବିଜ୍ଞାପନ ଦେଇଥାନ୍ତି – ଜି ଟିଭି (www.zeetelevision.com), ସୋନି ଟିଭି (www.setindia.com) ଏବଂ ଦୂରଦର୍ଶନ (www.ddindia.com) ଆଦି ଏହାର କିଛି ଉଦାହରଣ। ଟାଇମ୍‌ସ ଅଫ ଇଣ୍ଡିଆ ଖବର କାଗଜରେ ମଧ୍ୟ ଆମେ ଟାଇମ୍‌ସର ନିଜର ୱେବସ୍ଥଳୀ (www.timesindia.com) ଏବଂ www.indiainfoline.com, www.rediff.com ଭଳି ଅନ୍ୟ ଅନେକ ୱେବସ୍ଥଳୀର ବିଜ୍ଞାପନ ଦେଖିଥାଏ। ୱେବସ୍ଥଳୀର ବିଜ୍ଞାପନ ପାଇଁ ଲୋକମାନେ ବିଲବୋର୍ଡ, ପରିଚିତିପତ୍ର ଏବଂ ପଟି ବିଜ୍ଞାପନ ଭଳି ଅନ୍ୟ କେତେ ବାଟ ମଧ୍ୟ ବ୍ୟବହାର କରୁଛନ୍ତି। ଆମର ଖର୍ଚ୍ଚ କରିପାରିବାର କ୍ଷମତା ଅନୁସାରେ ଆମେ ଏହି ମାଧ୍ୟମଗୁଡ଼ିକ ଭିତରୁ ଗୋଟିଏ ବା ଅଧିକର ସାହାଯ୍ୟ ନେଇପାରିବା। ଅତି କମରେ ଆମେ ଆମର ଭିଜିଟିଙ୍ଗ କାର୍ଡ, ଚିଠି ପ୍ୟାଡ ଓ ଅନ୍ୟାନ୍ୟ ଦଲିଲରେ ଆମର ୱେବସ୍ଥଳୀର ଠିକଣା ଲେଖିପାରିବା।

ଆଉ ଗୋଟିଏ କାମ ମଧ୍ୟ ତୁମକୁ କରିବାକୁ ହେବ। ତାହାହେଲା ତୁମର ୱେବସ୍ଥଳୀ ଠିକଣା ବା ୟୁଆରଏଲକୁ ବିଭିନ୍ନ ସନ୍ଧାନୀ କଳ (ସର୍ଚ୍ଚ ଇଞ୍ଜିନ) ପାଖରେ ଦାଖଲ କରିବାକୁ ହେବ। ଏହା ଫଳରେ ତୁମ ପାଖରେ ଥିବା ବା ତୁମେ ଯୋଗାଇପାରିବା ସୂଚନାକୁ କୌଣସି ବ୍ୟବହାରକାରୀ ଖୋଜୁଥିଲେ ସର୍ଚ୍ଚ ଇଞ୍ଜିନଗୁଡ଼ିକ ସେମାନଙ୍କୁ ତୁମର ସଂଯୋଗ ଯୋଗାଇପାରିବେ। ତୁମର ୟୁଆରଏଲ କେମିତି ଦାଖଲ କରିବାକୁହେବ ତାହା ତୁମେ ପ୍ରତ୍ୟେକ ସନ୍ଧାନୀ କଳ ପାଖକୁ ଯାଇ ଦେଖିପାରିବ। ଏଥିପାଇଁ ବେଶ୍ କିଛି ସମୟ ଲାଗିଥାଏ। ତୁମ ୱେବସ୍ଥଳୀରେ ରହିଥିବା ବିଶେଷ କଥା ଉପରେ ଗୋଟିଏ ଛୋଟ ଲେଖା ତିଆରିକରି ତାହାକୁ କମ୍ପ୍ୟୁଟର ଟୁଡେ, ଡାଟାକ୍ୱେଷ୍ଟ, ପିସିକ୍ୱେଷ୍ଟ ଓ କମ୍ପ୍ୟୁଟର ୱଲର୍ଡ ଭଳି ବିଭିନ୍ନ କମ୍ପ୍ୟୁଟର ପତ୍ରିକାକୁ ପ୍ରକାଶନ ପାଇଁ ପଠାଇଦିଅ। ତୁମର ୱେବସ୍ଥଳୀର ପ୍ରଚାରପାଇଁ ଏହା ନିଶ୍ଚୟ କାମଦେବ। ଅବଶ୍ୟ ପ୍ରଚାରର ସବୁଠାରୁ ଭଲ ବାଟ ହେଉଛି 'ତୁଣ୍ଡ ବାଇଦ'। ତୁମର ୱେବସ୍ଥଳୀରେ ଯଦି ସତରେ କିଛି ଆଗ୍ରହର କଥା ରହିଥାଏ ତେବେ ଧୀରେ ଧୀରେ ପୂରା ନେଟଗୋଷ୍ଠୀ ଏହା ବିଷୟରେ ଜାଣିବାକୁ ପାଇବେ ଏବଂ ତୁମର ୱେବସ୍ଥଳୀକୁ ବୁଲିଆସିବା ଲୋକଙ୍କ ସଂଖ୍ୟା ନାଟକୀୟ ଭାବରେ ବଢ଼ିଯିବ।

### ୱେବସ୍ଥଳୀର ରକ୍ଷଣାବେକ୍ଷଣ

ୱେବସ୍ଥଳୀ ତିଆରି କରିବା ହେଉଛି ବିକାଶର ଅଧା କାମ ମାତ୍ର। କାଗଜରେ ଛପା ପରିଚିତିପତ୍ରରେ ତୁମେ କେତେ ମାସରେ ଥରେ ନୂଆ କଥା ଯୋଡ଼ିଦେଲେ ଚଳିବ। କିନ୍ତୁ ୱେବସ୍ଥଳୀପାଇଁ ଏକଥା ଅନବରତ ଭାବରେ କରିବାକୁ ହେବ। କାରଣ ଯେଉଁ ସ୍ଥଳୀର ସୂଚନା ଯେତେ ତାଜା ସେଠାକୁ ଆଗ ଯିବାପାଇଁ ବ୍ୟବହାରକାରୀର ସେତେ ବେଶୀ ପସନ୍ଦ। ଯେଉଁ ୱେବସ୍ଥଳୀରେ ନିୟମିତ ଭାବରେ ନୂଆ କଥା ଯୋଡ଼ା ହେଉନଥାଏ ଲୋକମାନେ ସେଠାକୁ ଯିବା ବନ୍ଦ କରିଦିଅନ୍ତି। କେବଳ ୱେବସ୍ଥଳୀର ସତେଜନ ଯେ ଜରୁରୀ ତାହାନୁହେଁ, ସେଥିରେ ନୂଆ ସେବା ଓ ସୂଚନା ଯୋଡ଼ିକରି ତାହାକୁ ଉନ୍ନତ କରିଚାଲିବା ମଧ୍ୟ ଅତି ଜରୁରୀ। ସେହି ସ୍ଥଳୀକୁ ଆସିବାପାଇଁ ସବୁବେଳେ ଯେପରି ଯଥେଷ୍ଟ କାରଣ ରହିଥିବ।

କେଉଁ ନୂଆ ତଥ୍ୟ ଯୋଡ଼ାଯିବ ସେ ବିଷୟରେ ସ୍ପଷ୍ଟଥିଲେ ୱେବପୃଷ୍ଠା ସତେଜନ କରିବାର ଧାରା ବିଶେଷ କଷ୍ଟ ନୁହେଁ। ଏଚଟିଏମଏଲ ସଂପାଦକ ଅଥବା ସରଳ ପାଠ୍ୟ ସଂପାଦକ ବ୍ୟବହାର କରି ତୁମର

ୱେବପୃଷ୍ଠାକୁ ବଦଳାଅ ଏବଂ ପୁଣିଥରେ ସେଗୁଡ଼ିକୁ ତୁମର ୱେବ ସେବକରେ ରଖିଦିଅ। ଅବଶ୍ୟ ତାହା କରିବା ପୂର୍ବରୁ ତୁମକୁ ନିଶ୍ଚିତ କରିବାକୁ ହେବ ଯେ ସଂଯୋଗଗୁଡ଼ିକ ଠିକ କାମ କରୁଛି ଏବଂ ୱେବପୃଷ୍ଠାଗୁଡ଼ିକ ତୁମେ ଚାହୁଁଥିବା ଭଳି ବ୍ରାଉଜରରେ ପ୍ରଦର୍ଶିତ ହେଉଛନ୍ତି।

### *ସୋର୍ସ୍ କୋଡ୍‌କୁ ଦେଖିବା କିପରି*

ଅତିରଚନା ପ୍ରଦର୍ଶକ ଭାଷା (ଏଚଟିଏମଏଲ) ବିଷୟରେ ଶିଖିବାପାଇଁ ଓ ତୁମ ଇଚ୍ଛା ଅନୁସାରେ ଗୋଟିଏ ୱେବସ୍ଥଳୀ ତିଆରି କରିବାପାଇଁ ତୁମକୁ ସେହିଭଳି ବିଶେଷତ୍ୱ ଥିବା ଅନ୍ୟ କୌଣସି ୱେବସ୍ଥଳୀର ସୋର୍ସ୍ କୋଡ୍ ଦେଖିବାକୁ ହେବ। ଇଣ୍ଟରନେଟ ଏକ୍ସପ୍ଲୋରର ବ୍ରାଉଜର ଏହି ପ୍ରକ୍ରିୟାକୁ ସହଜ କରିଥାଏ। ଭିଉ ମେନୁରେ ସୋର୍ସ କ୍ଲିକ୍ କର। ତୁମେ ଥିବା ୱେବପୃଷ୍ଠାର ସୋର୍ସ୍ କୋଡ୍ *ନୋଟପ୍ୟାଡ*ରେ ଦେଖାଯିବ। ତୁମେ ସେହି ପୃଷ୍ଠାକୁ ସଞ୍ଚିତ ରଖିପାର କିମ୍ବା ମୁଦ୍ରଣ କରିପାର।

### *ୱେବପୃଷ୍ଠା ସୃଷ୍ଟି ପାଇଁ ଦିଗ୍‌ଦର୍ଶନ*

ତୁମର ୱେବସ୍ଥଳୀକୁ ଫଳପ୍ରଦ କରିବା ପାଇଁ କିଛି ଦିଗ୍‌ଦର୍ଶନ ତଳେ ଦିଆଯାଇଛି।

୧. ସୂଚନା, ସ୍ୱଚ୍ଛତା ଓ ରଙ୍ଗ – ତୁମେ କ'ଣ ଜଣାଇବାକୁ ଚାହୁଁଛ ତାହା ତୁମ ୱେବସ୍ଥଳୀକୁ ଆସୁଥିବା ଦର୍ଶକ ସ୍ୱଚ୍ଛ ଭାବରେ ବୁଝିପାରିବା ଉଚିତ। ତୁମ ୱେବସ୍ଥଳୀର ରଙ୍ଗ ବ୍ୟବସ୍ଥା ଆଖିପାଇଁ ଆରାମଦାୟକ ହେବା ଦରକାର।

୨. ସୁଗମ ଭ୍ରମଣ *(ନେଭିଗେସନ୍)* – କୌଣସି ଦର୍ଶକ ତୁମର ୱେବସ୍ଥଳୀର ବିଭିନ୍ନ ଅଂଶକୁ ସ୍ୱଚ୍ଛନ୍ଦରେ ଯେପରି ଯାଇପାରୁଥିବ ତାହା ନିଶ୍ଚିତ କର।

୩. ଦର୍ଶକକୁ କିଛି ମୂଲ୍ୟବାନ ଜିନିଷ ଯୋଗାଅ। ୱେବସ୍ଥଳୀର ବିଭିନ୍ନ ଜିନିଷ ଭିତରେ ତାହା ଯେପରି ସହଜରେ ମିଳିପାରିବ ସେଥିପାଇଁ ବ୍ୟବସ୍ଥା କର।

୪. ତୁମ ପୃଷ୍ଠାର ଲମ୍ବ ସୀମିତ ରଖ।

୫. ଯଦି ତୁମେ ଏକ ଲମ୍ବା ପୃଷ୍ଠା ସୃଷ୍ଟିକରୁଛ, ତାହାହେଲେ ନିଶ୍ଚିତ ଭାବରେ ପୃଷ୍ଠାର ଆରମ୍ଭରେ ଗୋଟିଏ ଛୋଟ ଅନୁଚ୍ଛେଦସୂଚକ *(ଏଙ୍କର)* ତାଲିକା ରଖିଦିଅ। ଦରକାରୀ ଅନୁଚ୍ଛେଦକୁ ଯିବାରେ ଏହା ପାଠକକୁ ସାହାଯ୍ୟ କରିଥାଏ। ଠିକ ସେହିଭଳି ପୃଷ୍ଠାର ଶେଷରେ ଗୋଟିଏ ବୋତାମ ଯୋଗାଅ ଯାହା ପାଠକକୁ ସିଧା ପୃଷ୍ଠାର ଆରମ୍ଭକୁ ନେଇଯିବ।

୬. ପାଠକମାନଙ୍କୁ ବିଭିନ୍ନ ବିକଳ୍ପ ଯୋଗାଅ। ବିଶେଷ କରି ତୁମପୃଷ୍ଠାର ଗୋଟିଏ କେବଳପାଠ୍ୟ *(ଟେକ୍ସଟ୍ ଓନଲି)* ରୂପ ବିକଳ୍ପ ରଖ। ଯେଉଁମାନେ ଚିତ୍ର ପ୍ରଦର୍ଶନ ପାଇଁ ଅପେକ୍ଷା ନକରି ତୁମର ସୂଚନାକୁ ଯିବାପାଇଁ ଚାହାନ୍ତି ତାଙ୍କୁ ଏହା ସାହାଯ୍ୟ କରିବ।

୭. ପାରସ୍ପରିକ କ୍ରିୟା ପାଇଁ କିଛି ବ୍ୟବସ୍ଥା ରଖ।

୮. ବିଭିନ୍ନ ପ୍ରକାରର ମାଧ୍ୟମ ବ୍ୟବହାର କର। କେବଳ ପାଠ୍ୟ ଥିବା ପୃଷ୍ଠା ନିରସ ଲାଗିବ। ସେହିଭଳି ଚିତ୍ରରେ ଭରିଥିବା ପୃଷ୍ଠା ତୁମର ଅନ୍ୟ ସବୁ ସୂଚନାକୁ ବୁଡ଼ାଇଦେବ।

୯. ଅତିରଚନା *(ହାଇପରଟେକ୍ସଟ)* ବ୍ୟବହାରକରି ଯେତେ ସମ୍ଭବ ସଂଯୋଗ ଯୋଗାଅ। ତୁମ ପୃଷ୍ଠାକୁ ଆସୁଥିବା ଦର୍ଶକ ଯେପରି ଏହାକୁ ଆଧାର କରି ନିଜର ଖୋଜିବା କାମରେ ଆଗେଇ ଯାଇପାରିବ।

# ନବମ ଅଧ୍ୟାୟ

# ଇ-ବାଣିଜ୍ୟ ପରିଚିତି

ପୃଥିବୀ ସାରା ଚାଲିଥିବା ବାଣିଜ୍ୟ ବ୍ୟବସାୟର ଧାରାକୁ ଇଣ୍ଟରନେଟ ବିଶେଷ ଭାବରେ ପ୍ରଭାବିତ କରିଛି। ଇଣ୍ଟରନେଟ ମାଧ୍ୟମରେ ପୃଥିବୀର ବିଭିନ୍ନ ଅଞ୍ଚଳ ସଂଯୁକ୍ତ ହୋଇଚାଲିଛି, ଫଳରେ ସାରା ପୃଥିବୀର ବଜାର ମିଶି ଗୋଟିଏ ହୋଇଯାଇଛି। ତୁମ ଜିନିଷକୁ କେବଳ ସ୍ଥାନୀୟ ବଜାରରେ ବିକିବା ପାଇଁ ଏବେ ତୁମେ ଆଉ ବାଧ୍ୟ ନୁହଁ, ତାହାକୁ ପୃଥିବୀର ସବୁ ଅଞ୍ଚଳର ଲୋକଙ୍କୁ ବିକିପାରିବ। ଏକ ଆଭାସୀ ଭଣ୍ଡାର (ସାଇବର ଷ୍ଟୋର) ଖୋଲିଲେ ଦେଖିବ ଯେ ଅଷ୍ଟ୍ରେଲିଆ, ନାଇଜେରିଆ ବା ଅନ୍ୟ କେଉଁ ଦୂର ଜାଗାରୁ କେତେ ବରାଦ ତୁମକୁ ମିଳିବ। ଆମାଜନ-ଡଟ୍-କମ୍ ନାମକ ସଂସ୍ଥାରୁ ହିଁ ଇଣ୍ଟରନେଟ ଆଧାରିତ ବାଣିଜ୍ୟ ବା ଇ-ବାଣିଜ୍ୟର ଧାରଣା ଜନପ୍ରିୟ ହୋଇପାରିଛି। ଆମାଜନ ହେଉଛି ପ୍ରଥମ ସଂସ୍ଥା ଯିଏ ଏକ ଆଭାସୀ ବହି ଦୋକାନ ଆରମ୍ଭ କରିଥିଲା ଏବଂ ବ୍ୟବସାୟ ପାଇଁ ଇଣ୍ଟରନେଟ କିପରି ଏକ ଶକ୍ତିଶାଳୀ ମାଧ୍ୟମ ହୋଇପାରିବ ତାହା ଦେଖାଇଦେଲା।

*ଆଭାସୀ ଭଣ୍ଡାର କ'ଣ?*

ଗୋଟିଏ ଆଭାସୀ ଭଣ୍ଡାର କିପରି ଆରମ୍ଭ ହୁଏ ତାହା ପ୍ରଥମେ ବୁଝିବା। ମୋଟାମୋଟି ଭାବରେ ଦେଖିଲେ ଏହା ହେଉଛି ଗୋଟିଏ ୱେବସ୍ଥଳୀ ଯେଉଁଥିରେ ବିଭିନ୍ନ ପଣ୍ୟଦ୍ରବ୍ୟର ତାଲିକା ଓ ମୂଲ୍ୟର ସୂଚନା ରହିଛି। ଉଦାହରଣ ସ୍ୱରୂପ, ଆମାଜନ (www.amazon.com) ୱେବସ୍ଥଳୀକୁ ଗଲେ ତୁମକୁ ପ୍ରଥମେ ତୁମେ ଚାହୁଁଥିବା ବହିର ବିଭାଗ ବାଛିବାକୁ ହେବ। ବିଭାଗ ବାଛିଲାପରେ ତୁମକୁ ସେହି ବିଷୟର ସର୍ବଶେଷ ବହି ତାଲିକା ଦେଖାଯିବ ଏବଂ ସେଥିରୁ ତୁମେ ତୁମ ପସନ୍ଦର ବହି ବାଛିପାରିବ। ବହିଟି ବାଛିବା ଆଗରୁ ତୁମେ ତାହାର ସମୀକ୍ଷା ଦେଖିପାରିବ, ବହିଟି ବିଷୟରେ ଅଧିକ ଜାଣିବାକୁ ଚାହିଁଲେ ତାହାର ଆରମ୍ଭରୁ କିଛି ପୃଷ୍ଠା ମଧ୍ୟ ପଢ଼ିପାରିବ ଏବଂ ଅନ୍ୟମାନେ ତାକୁ କେତେ ପସନ୍ଦ କରୁଛନ୍ତି ତାହାର ସୂଚନା ସେଠାରେ ପାଇବ। ବହିର ପୃଷ୍ଠାସଂଖ୍ୟା, ଆକାର, ଦାମ ଆଦି ସବୁ ବିବରଣୀ ତୁମକୁ ସେଠାରେ ମିଳିଯିବ। ସେଠାରେ ତୁମେ ଯେତେ ଇଚ୍ଛା ସେତେ ବହି ବାଛିପାରିବ ଏବଂ ତୁମେ ଯେଉଁ ଯେଉଁ ବହି ବାଛିବ ତାହା ଗୋଟିଏ ସଉଦା ଗାଡ଼ିକୁ ଚାଲିଆସିବ। ବଛା ସରିଲେ କିଣିବା ଆଗରୁ ତୁମେ ସେଥିରୁ କିଛି ବହି କାଢ଼ିପାରିବ ବା ନୂଆ କିଛି ମିଶାଇପାରିବ। ଶେଷରେ ସେହି ୱେବସ୍ଥଳୀ ପହଞ୍ଚାଣ ଖର୍ଚ୍ଚ ସହିତ ପୂରା ମୂଲ୍ୟ ଜଣାଇବ ଏବଂ କେତେ ଦିନରେ ବହି ତୁମ ପାଖରେ ପହଞ୍ଚିବ ତାହା ତୁମକୁ କହିଦେବ। ତୁମେ ତୁମର କ୍ରେଡ଼ିଟ କାର୍ଡର ବିବରଣୀ ଦେଇ କିଣିବା କଥା ନିଶ୍ଚିତ କଲେ ବହିତକ ତୁମ ପାଖକୁ ପଠାଇ ଦିଆଯିବ।

ଇ-ବାଣିଜ୍ୟ ଜରିଆରେ କିଣାବିକା ଖୁବ ସହଜ ବୋଲି ତୁମେ ଭାବୁନାହଁ କି?

amazon.com.

VIEW CART | WISH LIST | YOUR ACCOUNT | HELP

TODAY'S FEATURED STORES

TOOLS & HARDWARE | HEALTH & BEAUTY | MUSIC | ELECTRONICS | BOOKS

WELCOME | STORE DIRECTORY

► INTERNATIONAL | ► TOP SELLERS | ► FRIENDS & FAVORITES | ► FREE E-CARDS | ► TAX CENTER

SEARCH

All Products

BROWSE

- Books
- Electronics
- Toys
- Kitchen
- DVD
- Video
- Music

Hello. Sign in to get recommendations.

Save up to 40% on all Hamilton Beach appliances. Hurry--the sale ends today!

Top Sellers in Camera & Photo

Polaroid i-zone Translucent Pocket Camera (Phat Blue)

Polaroid's i-zone pocket cameras produce tiny, high-quality Polaroid pictures about the size of a frame of 35mm film (or your average postage stamp). The i-zones use either sticky or nonsticky instant film, so you can put your pictures in a frame or stick them onto your notebook or CD player. While... Read more

Free shipping on February advertised specials in Electronics.

What's new at amazon.com

Already a customer? Sign in to see what's New for You.

New Releases

Grownups

DVD Action & Adventure

Classical

ପ୍ରଥମ ଆଭାସୀ ଭଣ୍ଡାର – 'ଆମାଜନ' ବହି ଦୋକାନ।

## *କିଛି ଜନପ୍ରିୟ ଭାରତୀୟ ଆଭାସୀ ଭଣ୍ଡାର*

ତାଙ୍କର ୱେବସ୍ଥଳୀ ଜରିଆରେ ସଙ୍ଗୀତ କେସେଟ୍, ବହି ଆଦି ବିକିବାରେ ପ୍ରଥମ ଭାରତୀୟ ସଂସ୍ଥା ହେଉଛି ରେଡିଫ୍ (www.rediff.net)। ବାବାବଜାର (www.bababazar.com) ନାମକ ଗୋଟିଏ ୱେବସ୍ଥଳୀ ଦିଲ୍ଲୀର ଲୋକମାନଙ୍କୁ ପରିବା ବିକିଥାଏ। ଏଠାରେ ପରିବା ବରାଦ ଦେଲେ ତାହା ସେମାନେ ଘରେ ପହଞ୍ଚାଇଦେବେ। 'ମୁଛଦ୍ ପାନୱାଲା' ୱେବସ୍ଥଳୀ ବିଷୟରେ ତୁମେ ହୁଏତ ଶୁଣିଥିବ। ମୁମ୍ବାଇର ଏହି ପାନ ବେପାରୀ ଇଣ୍ଟରନେଟ ଜରିଆରେ ପାନ ବିକ୍ରିକରନ୍ତି। ପୋଷାକ ନିର୍ମାତା 'ରିରାଗଦିନ୍' ଅନେକ ଦିନରୁ ଇଣ୍ଟରନେଟ ମାଧ୍ୟମରେ ଜାମା ବିକ୍ରି କରୁଛନ୍ତି। ଅମୂଲ ଆଭାସୀ ଭଣ୍ଡାରରୁ ତୁମେ ଚକୋଲେଟ, ଆଇସ୍‌କ୍ରିମ ଓ ଅମୂଲର ଅନ୍ୟ କ୍ଷୀର ଜିନିଷ କିଣିପାରିବ।

## *ଆଭାସୀ ଭଣ୍ଡାର ଗଢ଼ିବ କିପରି?*

ତୁମର ୱେବସ୍ଥଳୀରେ ଜିନିଷଗୁଡ଼ିକର ଚିତ୍ର ସହିତ ଅର୍ଡର ଦେବାପାଇଁ କେବଳ ଗୋଟିଏ ଫର୍ମ ଯୋଗାଇଦେଲେ ଆଭାସୀ ଭଣ୍ଡାରଟିଏ ହୋଇଯାଏନାହିଁ। ଅବଶ୍ୟ ଏହା ହେଉଛି ତୁମର ପ୍ରଥମ କାମ। ତୁମେ ଦେଖିଥିବ ଯେ ସବୁ ଆଭାସୀ ଭଣ୍ଡାରରେ ଗୋଟିଏ ସଉଦା ଗାଡ଼ିର ବ୍ୟବସ୍ଥା ରହିଥାଏ। ଏହି ଗାଡ଼ିରେ ତୁମ ପସନ୍ଦ କରୁଥିବା ଜିନିଷଗୁଡ଼ିକ ରଖାହୁଏ ଏବଂ ଶେଷରେ ତୁମେ ସ୍ଥିରକର କ'ଣ କାଢ଼ିଦେବ ଓ କ'ଣ ରଖିବ। ବଡ଼ ଦୋକାନମାନଙ୍କରେ ଏଭଳି ସଉଦା ଗାଡ଼ିମାନ ରହିଥାଏ। ଆଭାସୀ ଭଣ୍ଡାରର ଏହି କାମ କିଛି ବିଶେଷ କାରିକା ସାହାଯ୍ୟରେ କରାଯାଇଥାଏ। କିଛି ଶେୟାରୱେର ରୂପରେ ମଧ୍ୟ ଏଭଳି କାରିକା ମିଳିଥାଏ।

ଏହା ପରର କାମ ହେଉଛି ପଇସା କିପରି ଦିଆଯିବ। କ୍ରେତା ତା'ର ଦେୟ କ୍ରେଡିଟ୍ କାର୍ଡ ଜରିଆରେ ଦେବ ଏବଂ ଆଭାସୀ ବିକ୍ରେତା କିଛି ବ୍ୟବସ୍ଥା ରଖିଥିବ ଯାହା ସାହାଯ୍ୟରେ ବ୍ୟାଙ୍କ ବା ଅନ୍ୟ କେହି ସେହି କ୍ରେଡିଟ କାର୍ଡର ଚିହ୍ନଟ କରିପାରିବ ଏବଂ କିଣୁଥିବା ଲୋକର ଏକାଉଣ୍ଟରୁ ନିର୍ଦ୍ଦିଷ୍ଟ ପରିମାଣର ଟଙ୍କା ନେଇ





ଭାରତୀୟ ଆଭାସୀ ଭଣ୍ଡାର – 'ଅମୂଲ' ୱେବପୃଷ୍ଠା ।

ବିକ୍ରେତାର ଏକାଉଣ୍ଟରେ ଜମା କରିଦେବ । ଉପଯୁକ୍ତ ସୁରକ୍ଷା ବ୍ୟବସ୍ଥା ନଥିଲେ କ୍ରେତା ତା'ର କ୍ରେଡିଟ୍ କାର୍ଡର ବିବରଣୀ ଦେବାକୁ ଡରିବ । ତେଣୁ ଆଭାସୀ ଭଣ୍ଡାରକୁ କୌଣସି ଜଣାଶୁଣା ଯାଞ୍ଚକାରୀ ସଂସ୍ଥାଠାରୁ ନିଜ ବିଷୟରେ ପ୍ରମାଣପତ୍ର ହାସଲ କରିବାକୁ ହେବ ଏବଂ କ୍ରେତାର କ୍ରେଡିଟ୍ କାର୍ଡ ବିବରଣୀକୁ ସୁରକ୍ଷିତ ରଖିବା ବ୍ୟବସ୍ଥା କରିବାକୁ ପଡ଼ିବ ।

ଶେଷରେ ବିକ୍ରି ହେଉଥିବା ଜିନିଷ କିପରି କ୍ରେତା ପାଖରେ ପହଞ୍ଚିବ ତାହାର ଭୌତିକ ବ୍ୟବସ୍ଥା ଆଭାସୀ ଭଣ୍ଡାରକୁ କରିବାକୁହେବ । ଏଥିପାଇଁ ତାଙ୍କୁ କୌଣସି ପରିବହନ କମ୍ପାନୀ ବା ଘରୋଇ ଡାକ କମ୍ପାନୀ ସହିତ ଯୋଗାଯୋଗ ରଖିବାକୁହେବ ।

ମୋଟ ଉପରେ ଦେଖିଲେ ଆଭାସୀ ଭଣ୍ଡାରର ଅଦେଖା କାମ ଭିତରେ ରହିବ – କ୍ରେତାମାନଙ୍କର ଚାହିଦାକୁ ବୁଝି ବିକ୍ରିପାଇଁ ନୂଆ ନୂଆ ଜିନିଷ ରଖିବାର ବ୍ୟବସ୍ଥା କରିବା, ସେବାଗୁଡ଼ିକୁ ଉନ୍ନତ କରିବା, ସର୍ବଶେଷ ସୂଚନା ଯୋଗାଇବାର ବାଟ ଖୋଜିବା ଏବଂ ଉତ୍ପାଦନକାରୀ ଓ ଗୋଦାମଘର ସହିତ ଉପଯୁକ୍ତ ଯୋଗାଯୋଗ ରଖି ଠିକ୍ ସମୟରେ ଜିନିଷ ପହଞ୍ଚାଇବା ।

ଇ–ଟଏଜ୍ (www.e-toys.com) ବା ଆମାଜନ (www.amazon.com) ସ୍ଥଳୀକୁ ଗଲେ ତୁମେ ଦେଖିପାରିବ କ୍ରେତାର ବାଛିବା କାମରେ ସେମାନେ କିପରି ସାହାଯ୍ୟ କରୁଛନ୍ତି । ସେହିଭଳି ତୁମକୁ ମଧ୍ୟ ନିଜର ୱେବସ୍ଥଳୀକୁ ଯଥେଷ୍ଟ ନମନୀୟ କରିବାକୁ ହେବ ଯେପରି କ୍ରେତାମାନେ ଖୋଜୁଥିବା ଜିନିଷ ତାଙ୍କୁ ସହଜରେ ମିଳିପାରିବ ।

ଆଭାସୀ ଭଣ୍ଡାର ଗଢ଼ିବା ପାଇଁ ଆଇବିଏମ୍ ଭଳି କମ୍ପାନୀମାନେ କାରିକା ସହାୟତା ଯୋଗାଇ ଦେଉଛନ୍ତି । ଏଥିପାଇଁ ବେଶ୍ କିଛି ଖର୍ଚ୍ଚ ଲାଗିବ, କିନ୍ତୁ ଏହା ସାହାଯ୍ୟରେ ଖୁବ୍ ସହଜରେ ଗୋଟିଏ ଭଲ ଆଭାସୀ ଭଣ୍ଡାର ଜଣେ ଗଢ଼ି ପାରିବ ।

## ଭାରତରେ ଇ-ବାଣିଜ୍ୟ ପାଇଁ କିଛି ବାଧା

ଆଗାମୀ ଦିନମାନଙ୍କରେ ଇ-ବାଣିଜ୍ୟର ଜନପ୍ରିୟତା ନିଶ୍ଚିତ ଭାବରେ ବଢ଼ିଚାଲିବ। କିନ୍ତୁ ଏହାର ସୁପରିଚାଳନା ପାଇଁ କେତେଗୁଡ଼ିଏ ଦିଗ ପ୍ରତି ବିଶେଷ ଧ୍ୟାନ ଦେବାକୁହେବ।

ଆମେ ଦେଖିଲେ ଯେ ଇ-ବାଣିଜ୍ୟର ବିକାକିଣା ଆଭାସୀ ଦୁନିଆରେ ହୋଇଯାଏ। କିନ୍ତୁ କ୍ରେତା ପାଖରେ ଜିନିଷ ପହଞ୍ଚାଇବା ପାଇଁ ଭଲ ବାସ୍ତବ ସୁବିଧା ରହିଥିବା ଦରକାର। ଆମ ଦେଶରେ ଘରୋଇ ଡାକ ବ୍ୟବସ୍ଥା ବେଶ୍ ମହଙ୍ଗା। ଏଥିଯୋଗୁ ଇଣ୍ଟରନେଟରେ କିଣାଯାଉଥିବା ଜିନିଷର ଦାମ ଯଦି ଅଧିକ ହୁଏ ତେବେ ଆମେ ହୁଏତ ତାକୁ କିଣିବାନାହିଁ। ଏହି କାରଣରୁ ଅମୂଲ କମ୍ପାନୀ ଗୋଟିଏ ଅଲଗା ବ୍ୟବସ୍ଥା କରିଛି। ଅମୂଲ ଆଭାସୀ ଭଣ୍ଡାରରୁ କିଣାଯାଉଥିବା ଜିନିଷକୁ କ୍ରେତା ପାଖରେ ପହଞ୍ଚାଇବାର ଦାୟିତ୍ୱ ନିଅନ୍ତି ଅମୂଲର ସ୍ଥାନୀୟ ବିତରକମାନେ। ତୁମେ କିଛି କିଣୁଥିବାର ଖବର ଆପେ ଆପେ ଇ-ଡାକ ଜରିଆରେ ସ୍ଥାନୀୟ ବିତରକଙ୍କ ପାଖରେ ପହଞ୍ଚିଯାଏ। ସେହି ବିତରକ ତୁମ ଘରେ ଜିନିଷ ପହଞ୍ଚାଇକରି ତାହାର ମୂଲ୍ୟ ନେଇଆସନ୍ତି। ଆମ ଦେଶରେ ଥିବା କ୍ରେଡିଟ କାର୍ଡର ସମସ୍ୟା ମଧ୍ୟ ଏହି ବାଟରେ ଦୂର ହୋଇଯାଏ। ତେଣୁ ଯେଉଁ କମ୍ପାନୀର ବ୍ୟାପକ ବିତରଣ ବ୍ୟବସ୍ଥା ଆଗରୁ ରହିଛି, ତାହାପାଇଁ ଆଭାସୀ ଭଣ୍ଡାର ଖୋଲିବା ସହଜ ହୋଇଯାଏ।

ବିଶେଷ ଧ୍ୟାନ ଦରକାର କରୁଥିବା ଅନ୍ୟ ଦିଗଟି ହେଉଛି ସୁରକ୍ଷାର ପ୍ରଶ୍ନ। ଆଭାସୀ କିଣାବିକା ପାଇଁ ମୂଲ୍ୟ ବିନିମୟ ହୁଏ କ୍ରେଡିଟ କାର୍ଡ ଜରିଆରେ ଏବଂ ଏଥିପାଇଁ ବିଶେଷ ସୁରକ୍ଷା ବ୍ୟବସ୍ଥା ଦରକାର ହୁଏ। କାରଣ ତୁମର କ୍ରେଡିଟ କାର୍ଡ ନମ୍ବର ଆଉ କାହା ହାତରେ ପଡ଼ିଲେ ସେ ତାହାର ଅପବ୍ୟବହାର କରିପାରେ। ତୁମେ ଶୁଣିଥିବ ଯେ କେତେ *ହ୍ୟାକର* କିପରି ଜନପ୍ରିୟ ୱେବସ୍ଥଳୀର ସୁରକ୍ଷା ଡେଇଁ ପଶିପାରନ୍ତି। ଏବେ ଜଣେ ହ୍ୟାକର ଗୋଟିଏ ସଙ୍ଗୀତ ବିକ୍ରେତାଙ୍କ ୱେବସ୍ଥଳୀରେ ପଶି ଅନେକଗୁଡ଼ିଏ କ୍ରେଡିଟ କାର୍ଡ ନମ୍ବର ନେଇଆସିଥିଲା ଏବଂ ସେଗୁଡ଼ିକୁ ନିଜ ୱେବସ୍ଥଳୀରେ ପ୍ରଦର୍ଶିତ କରିଥିଲା। ସୁରକ୍ଷା ପାଇଁ ଏବେ ଅନେକ ବ୍ୟବସ୍ଥା ହେଲାଣି। ସାଂଖ୍ୟିକ ଦସ୍ତଖତ, ଗୁପ୍ତ ସଙ୍କେତନ ଓ ଯାଞ୍ଚକାରୀ ସଂସ୍ଥାର ପ୍ରମାଣପତ୍ର ଆଦି ଏଥିରୁ କିଛି। ଅନେକ ସଂସ୍ଥା ଅଛନ୍ତି ଯେଉଁମାନେ ଯାଞ୍ଚକରି ଜଣାଇ ଦିଅନ୍ତି ଯେ କୌଣସି ୱେବସ୍ଥଳୀ ବିଶ୍ୱାସଯୋଗ୍ୟ କି ନୁହେଁ। କୌଣସି ୱେବସ୍ଥଳୀ ନିଜକୁ ଅନ୍ୟ କିଛି ବୋଲି ପରିଚୟ ଦେଇ ତୁମର କ୍ରେଡିଟ କାର୍ଡ ନମ୍ବର ନେଇଯାଇପାରେ ଏବଂ କେତେ କେତେ ବାଟରେ ତୁମକୁ ଠକିଚାଲିପାରେ। ବିଭିନ୍ନ ପ୍ରକାରର ଗୁପ୍ତ ସଙ୍କେତନ ଜରିଆରେ ଆମେ ନିଶ୍ଚିତ କରିପାରିବା ଯେ କେବଳ ଆମେ ଚାହୁଁଥିବା ଲୋକ ହିଁ ଆମର ସଙ୍କେତକୁ ବୁଝିବ ଓ ଆମର ସନ୍ଦେଶ ପଢ଼ିପାରିବ। ନେଟରେ କାରବାର କଲାବେଳେ ଅନେକ ଦଲିଲକୁ ପ୍ରାମାଣିକ କରିବାପାଇଁ ଆମର ଦସ୍ତଖତ ଦରକାର ପଡ଼ିଥାଏ। ସେଥିପାଇଁ ଆମର ସାଂଖ୍ୟିକ ଦସ୍ତଖତ ବ୍ୟବହାର କରାଯାଇପାରେ।

ଆଭାସୀ ଦୁନିଆର ବ୍ୟବସାୟରେ ଜାଲିଆତିର ସମ୍ଭାବନା ବେଶୀ ରହେ। ସେହିସବୁ ଠକାମୀକୁ ଧରିବା ପାଇଁ ଉପଯୁକ୍ତ ଆଇନ ଦରକାର। ଅନେକ ବର୍ଷ ତଳେ ଆଇନ କାନୁନ ତିଆରି ହୋଇଥିବା ସମୟରେ ଇ-ବାଣିଜ୍ୟର ସ୍ୱପ୍ନ ମଧ୍ୟ ସମ୍ଭବ ନଥିଲା। ତେଣୁ ଏହି ପୁରୁଣା ଆଇନ ବ୍ୟବସ୍ଥାରେ ଇଲେକ୍ଟ୍ରନିକ ଦଲିଲ ଓ କାରବାର ସବୁକୁ ସାକ୍ଷ୍ୟ ବା ପ୍ରମାଣ ଭାବରେ ସ୍ୱୀକୃତି ଦେବାର ବ୍ୟବସ୍ଥା ରହିନାହିଁ। ଇ-ବାଣିଜ୍ୟକୁ ସାହାଯ୍ୟ କଲାଭଳି ନୂଆ 'ଆଭାସୀ ଆଇନ' (*ସାଇବର ଲ*) ସବୁ ଏବେ ଆମ ଦେଶରେ ଲାଗୁ ହେଉଛି।

ଅବଶ୍ୟ ଆଭାସୀ ଭଣ୍ଡାରରେ କିଣାବିକା କରିବା ପାଇଁ ଆମ ଦେଶରେ ଯଥେଷ୍ଟ ଟେଲିଫୋନ ସଂଯୋଗ ଓ କମ୍ପ୍ୟୁଟର ଭଳି ଭିତ୍ତିଭୂମି ପ୍ରଥମେ ଦରକାର। ତାହାଛଡ଼ା ଏହି ଧାରାରେ କିଣାବିକା ସହିତ ଆମକୁ ଅଭ୍ୟସ୍ତ ହେବାକୁ ପଡ଼ିବ। ଦୋକାନକୁ ଯାଇ, ଜିନିଷକୁ ଦେଖି ଛୁଇଁ, ଦୋକାନୀ ସାଙ୍ଗରେ କଥାହୋଇ କିଛି କିଣିବାକୁ ଆମେ ପସନ୍ଦ କରିଥାଏ। ଏବେ ୱେବ ଅନେକ ପରିଯୋଜନାକାରୀ ଆଭାସୀ ଭଣ୍ଡାରରେ କ୍ରେତାମାନଙ୍କୁ ସେହିଭଳି ଅନୁଭୂତି ଦେବାକୁ ଚେଷ୍ଟା କରୁଛନ୍ତି।

# ପରିଶିଷ୍ଟ

# କିଛି ଆଗ୍ରହଜନକ ୱେବସ୍ଥଳୀ

| | |
|---|---|
| The Microsoft Plaza | plaza.msn.com |
| Amazon.com | www.amazon.com |
| Barnes and Noble | www.barnesandnoble.com |
| CDNow | www.cdnow.com |
| Music Boulevard | www.musicblvd.com |
| Dell | www.dell.com |
| Gateway | www.gateway.com |
| Computer Shopper | computershopper.zdnet.com |
| CyberShop | cybershop.com |
| Sears | www.sears.com |
| iMall | www.imall.com |
| All-Internet Shopping Directory | www.all-internet.com |
| Internet Mall | www.shopnow.com |
| Bottom Dollar | www.bottomdollar.com |
| Yahoo Junglee | yahoo.junglee.com |
| Excite Jango | jango.excite.com |
| Better Business Bureau | www.bbb.org |
| Consumer World | www.consumerworld.org |
| Cool Savings | www.coolsavings.com |
| Compare.net | www.compare.net |
| Yahoo Auctions | auctions.yahoo.com |
| Auction site | www.ebay.com |
| Toys | www.etoy.com |
| Guide | www.e-buyersguide.com |
| e-checks | www.freechecks.com |
| **Finacial & Banking Services** | |
| MSN MoneyCentral | moneycentral.msn.com |
| Money 99 | www.microsoft.com/money/ |
| Association of Individual Investors | www.aaii.com/invbas/ |
| Citibank Test Drive | home.da-us.citibank.com/da |
| Electronic Banking Association | www.e-banking.org |
| Intuit Online Payment | www.intuit.com/banking |
| Quicken Financial Network | www.quicken.com |
| **News** | |
| MSNBC | www.msnbc.com |
| The Weather Channel | www.weather.com/homepage.html |
| New York Times | www.nytimes.com |

| | |
|---|---|
| Washington Post | www.Washingtonpost.com |
| CNN Custom News | customnews.cnn.com |
| CRAYON | www.crayon.net |
| NewsPage | www.newspage.com |
| BBC | www.bbc.co.uk |
| Voice of America | www.voa.gov |
| World Meteorological Organization | www.wmo.ch |
| CBS SportsLine | cbs.sportsline.com |
| Gamecruiser | www.gamecruiser.com |
| MTV Online | mtv.com |
| Hollywood Online | hollywood.com |

**Online Travel Services**

| | |
|---|---|
| The Trip | www.thetrip.com |
| Traveolcity | www.travelocity.com |
| Expedia | expedia.msn.com |
| Preview Travel | www.previewtravel.com |
| Priceline | www.priceline.com |

**Health and Medicine**

| | |
|---|---|
| Medscape | www.medscape.com |
| Healthfinder | www.healthfinder.gov |
| MedicineNet | www.medicinenet.com |

**Reference**

| | |
|---|---|
| Microsoft Encarta Online | encarta.msn.com/EncartaHome.asp |
| Encyclopedia Britannica | www.eb.com |
| Columbia Encyclopedia | www.infoplease.com |
| | encyclopedia.com |
| "Familiar Quotations: Passages, Phrases, and Proverbs Traced to Their Sources" by Bartlett | www.columbia.edu/acis/bartleby/bartlett/ |
| Merriam-Webster | www.m-w.com |
| Roget's Thesaurus | thesaurus.com |
| OneLook | www.onelook.com |
| Internet Public Library | www.ipl.org |
| The Library of Congress Web site | www.loc.gov |
| References: Libraries | www.yahoo.com/Reference/Libraries/ |
| World of Reading | www.worldreading.org |
| Children's Literature Web Guide | www.acs.ucalgary.cal/~dkbrown |
| ALSC | www.ala.org/alsc |
| KidPub | www.kidpub.org |
| FunBrain | www.funbrain.com |

**Miscellany**

| | |
|---|---|
| National Geographic Online | www.nationalgeographic.com/ |
| Dilbert Zone | www.unitedmedia.com/comics/dilbert/ |
| Art Museum Network | www.amn.org |

| | |
|---|---|
| NASA | www.nasa.gov/ |
| Left Hand Publishing | www.lefthandpublishing.com/ |
| GameSpot | www.gamespot.com |
| Videogames.com | www.videogames.com |
| Smart Traveller | www.smarttraveler.com |
| Lonely Planet Guides | www.lonelyplanet.com |
| ThinkQuest | www.thinkquest.org |
| The Tech 10 | www.thetech.org/hype/tech10 |
| Kids World 2000 | now2000.com/kids |
| Smithosonian Institution | www.si.edu |
| The student Center | www.studentcenter.org |
| Parent Soup | www.parentsoup.com |
| Education Resources Information Center (ERIC) | www.accesseric.org:81 |
| Biography.com | www.biography.com |
| Project Gutenberg | promo.net/pg |
| Bibliomania | www.bibliomania.com |
| Electronic Text Center | etext.lib.virginia.edu |
| The Mining Company | miningco.com |
| Senior-Site | seniors-site.com |
| SeniorNet | www.seniornet.org |
| CNET | cnet.com |
| Silicon Investor | www.siliconinvestor.com |

**Downloading Shareware and Freeware**

| | |
|---|---|
| ZDNet Software Library | www.zdnet.com/swlib |
| CNET Download.com | www.download.com |
| CNET Shareware.com | www.shareware.com |
| TUCOWS | www.tucows.com |

**Voluntary Organisations**

www.netaid.org
www.propoor.org
www.hunger.org

**Educational Sites for Children**

| | |
|---|---|
| Kidlink | www.kidlink.org |
| The Global Schoolhouse | www.gsn.org |
| CU-SeeMe | www.cu-seeme.com |
| Consortium for School Networking | www.cosn.org |
| Info. Infrastructure & Tech. Admn. | www.ietf.org |
| AskERIC (Educational Resources Info Center) | ericir.syr.edu |
| ICONNECT | ericir.syr.edu/ICONN/ihome.html |
| Int. Society for Tech. in Education | isteonlie.uoregon.edu |
| Classroom Connect | www.classroom.net |
| Web66 | web66.coled.umn.edu |
| Cisco Edn Archieve & Resources Catalog | sunsite.unc.edu/cisco/index.html |

## ପରିଶିଷ୍ଟ ୨

# ଭାରତ ସମ୍ପର୍କିତ କିଛି ୱେବସାଇଟ

INDIAN SEARCH ENGINE

| | |
|---|---|
| http://www.jadoo.com | Jadoo |
| http://www.khoj.com | Khoj |
| http://www.iloveindia.com | ILoveIndia |
| http://www.123india.com | 123India |

NEWS & TV SITES

| | |
|---|---|
| http://www.samachar.com | Portal to Newspapers |
| http://www.rediff.com | RediffOnTheNet |
| http://www.indiaexpress.com | Indian Express |
| http://www.hindustantimes.com | Hindustan Times |
| http://www.timesofindia.com | Times of India |
| http://www.the-hindu.com | The Hindu |
| http://www.mid-day.com | Mid-Day |
| http://www.asianage.com | Asian Age |
| http://www.businessworld.com | Business World |
| http://www.hinduonline.com | The Hindu |
| http://www.business-standard.com/ | Business Standard |
| http://www.outlookindia.com/ | Outlook (Weekly) |
| http://www.indiaabroad.com | India Abroad |
| http://www.economictimes.com | Economic Times |
| http://www.feminaindia.com | Femina |
| http://www.businessworldindia.com/ | BusinessWorld |
| http://www.india-today.com/btoday/index.html | BusinessToday |
| http://www.indiaworld.com | IndiaWorld |
| http://www.siliconindia.com | Silicon India magazine |
| http://www.filmfare.com/ | Filmfare |
| http://www.the-hindu.com/tss/ | The Sports Star |
| http://www.economictimes.com/etonline/property/ | Property Times |
| http://www.tribuneindia.com/ | Tribune India |
| http://www.expressindia.com/screen | Screen Weekly |
| http://www.ddindia.net/ | DoorDarshan |
| http://www.asianet-tv.com/ | Asianet TV |
| http://www.startv.com/ | Star TV |
| http://www.zeetelevision.com/ | Zee Television |
| http://www.setindia.com/ | Sony Entertainment |
| http://www.sony.com/ | Sony Music |

GENERAL SITES

| | |
|---|---|
| http://www.aboutindia.com/ | About India |
| http://www.joyofindia.com/ | 411 Best Indian Sites |
| http://www.bharatmail.com/index.html | Bharat Mail |
| http://www.mahesh.com/ | Discover India |
| http://www.getitindia.com/ | Get It India |
| http://www.hindustan.net/ | Hindustan Net |
| http://www.indiaconnect.com/ | India Connect |
| http://www.indiadaily.com/ | India Daily |
| http://www.indian.net/internet.htm | IndiaNet |
| http://www.india-site.net/ | India Site |
| http://www.indiawithlove.com/ | IndiaWithLove |
| http://www.syscom-corp.com/internat.html | Indogram |
| http://www.messageindia.com/ | Message India |
| http://www.hindukids.org | Site for kids |

SCIENCE

| | |
|---|---|
| http://www.acsu.buffalo.edu/~gupta/biography.html | Ind. Scientist |
| http://www.isro.org/ | Indian Space Org |
| http://www.vigyanprasar.com/ | VigyanPrasar(Science Popularisation) |

EDUCATIONAL (INCLUDING HIGHER EDUCATION)

| | |
|---|---|
| http://www.iimb.ernet.in | IIM-Bangalore |
| http://www.iimahd.ernet.in | IIM-Ahmedabad |
| http://www.nos.org | National Open School |
| http://www.annauniv.org/ | Anna University |
| http://www.ignou.edu/ | Indira Gandhi National Open University |
| http://www.jnu.ac.in/ | JNU University |
| http://www.mybangalore.com/kannadauniversity/kannada.htm | K/Univ |
| http://www.ernet.in/ | List of IITs |
| http://bioinfo.ernet.in/ | University of Pune |

TRAVEL, HOTELS, HOLIDAYS

| | |
|---|---|
| http://www.indiagov.org/ | Discover India (MEA) |
| http://www.allindiaguide.com | Comprehensive tour guide |
| http://www.delhitourism.com | Delhi Tourism |
| http://www.indiatravelog.com | India Travelog (Destinations) |
| http://www.allindia.com/tourism | Travel and tourism |
| http://www.jayatravel.com | Travel Abroad |
| http://www.comforttravel.com | Low US-India Fares |
| http://www.vgpindia.com/holiday.htm | Holiday Resorts |
| http://www.welcomgroup.com/ | Welcome Group |
| http://www.tata.com/tajhotels/index.htm | The Taj Hotels |
| http://www.welcomgroup.com/sheratontowers/ | Sheraton Towers |

AIRLINES

| | |
|---|---|
| http://www.nic.in/indian-airlines/ | Indian Airlines |
| http://www.airindia.com/ | Air India |
| http://www.jetairways.com/ | Jet Airways |
| http://www.saharaairline.com/ | Sahara Airlines |

ENTERTAINMENT, NEWS, HOBBIES, ETC

| | |
|---|---|
| http://www.imagekhazana.com | News, entertainment, etc |
| http://www.teenstation.com | Sites for Hindi film music |
| http://www.JoyOfIndia.com | India's entertainment network |
| http://www.BollywoodWorld.com | Bollywood World |
| http://www.texstylesindia.com | Textiles |
| http://www.manpasand.com | Indian Favourites |
| http://www.indiancultureonline.com | Culture Online |
| http://www.clicktickets.com | Online cinema bookings |
| http://www.mapsofindia.com | Maps of India |

ART

| | |
|---|---|
| http://www.internetindia.com/ashowkase/ | Art Showcase |
| http://www.india-today.com/atoday/ | Art Today |
| http://www.indiagate.com/cag/artist.html | Artists Biography |

FUN & HUMOUR

| | |
|---|---|
| http://members.tripod.com/~singhsingh/india | Indian Humor |
| http://www.indolink.com/humor/ | Indolink Humor |
| http://www.gis.net/~abhijeet | Desi Humor |
| http://www.nerc.com/~aloomba/laughs.html | Desi Jokes |
| http://www.rajiv.org/ii/index.html | Rajiv's Jokes |
| http://members.tripod.com/~divya_nagpal/jokes.html | Rohan's Jokes |
| http://www.indianlampoon.com | Indian lampoon |
| http://www.hungama.com | |
| http://www.masti.com | |
| http://www.teenfunda.com | |

MUSIC, DANCE, FILM, ENTERTAINMENT

| | |
|---|---|
| http://www.indiamovies.com/ | Absolute Bollywood |
| http://www.jaan.com/ | Access Bollywood |
| http://www.bharath.com/music/ | All languages Songs |
| http://www.abclonline.com/ | ABCL Online |
| http://www.punjabonline.com/music/music.html | Bhangra MP3s |
| http://www.bharathanatyam.com/home.html | Bharathanatyam |
| http://www.internetindia.com/CineBlitz/ | CineBlitz |
| http://www.allindia.com/arts/dance.htm | Dances of India |
| http://www.teenstati on.com/mp/filmi/index.html | Filmi MP3s |

| | |
|---|---|
| http://www.indiafm.com/quiz.htm | Filmi Quiz |
| http://www.yashrajfilms.com/ | Yash Raj Films |
| http://www.bollywoodworld.com/quiz2.htm | Bolly Puzzles |
| http://learn.senecac.on.ca/~ppgandhi/ram.html | BollyMusic Street |
| http://www.bollywoodworld.com/members/bollyguide/ | Bollywood Guide |
| http://www.radiosargam.com/bollymovies | Bollywood Movies |
| http://www.bollywoodworld.com/music.htm | Bollywood Music |
| http://bollywoodonline.com/ | Bollywood Online |
| http://www.bollywoodworld.com/ | Bollywood World |
| http://www.jps.net/mayur/ | Bollywood's Elegence |
| http://www.tipsmusic.com/ | Tips Music |
| http://www.indolink.com/bollywood/topfilms.html | Top Ten Movies |
| http://www.digitalbollywood.com/ | Hindi DVDs Movies |
| http://www.hindimovies.com/ | Hindi Movies |
| http://www.saregama.com/ | HMV Audio |
| http://www.number1media.com/ | Indian Music Station |
| http://www.jps.net/mayur/hindi.htm | New Hindi Songs |
| http://www.rajshri.com/ | Rajshri Films |
| http://members.tripod.com/~mytrei/ | Telgu Filmi Music |
| http://www.bollywoodworld.com/mp3songs.htm | MP3 Site |
| http://www.indiamusic.com/ | India Music |
| http://soundsofindia.acunet.net/realaudio.html | Sounds of India |
| http://www.shringar.com/ | Shringar Films |
| http://www.travel.to/bollywood | Rangeela Bollywood |
| http://www.music-from-india.com/ | Magnasound |
| http://www.bangaloreonline.com/nrityagram/ | Nityagram |
| http://www.brain.net.pk/~poora/bollywood.html | Poora's Bollywood |

VOLUNTARY ORGANISATIONS

http://www.actionindia.org
http://www.indiatogether.org
http://www.aidindia.org
http://www.seedsnet.org
http://www.idsusa.org

HEALTH

| | |
|---|---|
| http://www.aiims.edu/ | AIIMS Delhi |
| http://www.ayurvedic.org/ | Ayurvedic |
| http://www.indiaspace.com/homoeopathy/ | Homeopathy |
| http://education.vsnl.com/publichealthtoday | Public Health India |
| http://www.nic.in/naco/ | Natl AIDS Control Orgn |
| http://members.rediff.com/phi/phi.htm | Public Health India |
| http://www.healthlibrary.com | Texts on health in India |
| http://www.sreekrishnapharmacy.com | Ayurveda |
| http://www.foundation.novartis.com/leprosy_india_goa.htm | Leprosy Proj. |

CAREERS

| | |
|---|---|
| http://www.careerindia.com/ | Careers India |
| http://www.headstartexpress.com | IndianExpress careers |
| http://www.naukri.com | Site for recruiters |
| http://www.timesojobsandcareers.com | Times Jobs, Careers |
| http://www.recruitmentindia.com/ | Employment Exchange |
| http://www.technojob.com/ | Technojob On-Line! |
| http://www.tarvindiajobs.com/ tarvindiajobs.com | |
| http://www.youngindia.com youngIndia/ | Job hunting |
| http://www.indianjobs.com | Indian jobs |

RELIGIONS & SPIRITUALIASM

| | |
|---|---|
| http://www.siddhivinayak.org | Siddhivinayak Temple, Bombay |
| http://sdbbom.ourfamily.com | Salesian Province of Bombay |
| http://www.egroups.com/list/arjunas/ | Youth Forum of Vedanta |
| http://www.egroups.com/list/guru-prasad/ | Gita messages |
| http://www.onelist.com/archives.cgi/vedantamission | Vedanta |
| http://www.onelist.com/archives.cgi/shankalu | Rationalist Hindus |
| http://tej.freeservers.com | Tej-Prasarini |
| http://bgvk.freeservers.com | Bosco village development |
| http://www.delphi.com/heretic/start | Site for agnostics |

EXPATRIATE SITES

| | |
|---|---|
| http://www.iaol.com | Indian Americans OnLine |
| http://www.homeindia.com | HomeIndia |
| http://www.nofsa.uio.no | Norwegian Forum for S.Asia |
| http://www.asianindians.com | Asian Indians |
| http://www.indiansabroad.net | Indians Abroad |
| http://www.allindia.com/nridesk | Special NRI Desk |
| http://www.homeindia.com/corp/crossland | NRI Services |
| http://members.tripod.com/~goanj/ | Goan Assn of New Jersey |
| http://www.web.net/~dbdavis/index.html | Canadians of Indian origin |
| http://www.cs.columbia.edu/~deba/ | Oriya homepage |
| http://www.goa-world.net/gulf_goans | Gulf Goans |